ବେଗେ ତୋର ଏ ରୋଗ ଯେ
ଆରୋଗ୍ୟ ପାଇବ କର,
ସେଇଭଳି କବିରାଜ ପାଶେ,
ଯିବାର ମୁଁ ଉଚିତ ମଣୁଛି ।
ଯାଏଁ, ଦେଖେଁ,
ଭଗବାନ ଏକା ଯାହା ତୋର
ଏ ବିପଦେ ଯିନା !
ଠାକୁରାଣୀ,
ଆଜ୍ଞା ମାନ ତୋର,
ଥରକୁ ଥର ମୁଁ
ଯିବ ଆସିବ ଲୋ ରାଇ, କଳାକାହ୍ନୁ ପାଶେ ।
ଅକପଟ କର୍ତ୍ତବ୍ୟର
ଏହି ଏକା ପରିଣାମ ବୋଲି
ବିଚାରୁଛି ମନେ ମନେ ମୁହିଁ ।
ଫଳ କିନ୍ତୁ ଈଶ୍ୱର ଅଧୀନ ।
ପ୍ରବୋଧି ଏସନ ଶ୍ରୀମତୀରେ
ଚଳିଲେ ଲଳିତା ବେଗେ
ମୋହନ ପୁରତେ ।



## ଅନୁଚିନ୍ତା

ନାଲି ରବି ଯେବେ ଚରମ ଅଚଳ ଛୁଇଁ ଛୁଇଁ ଆସୁଥାଏ,
ନୀଳ ଯମୁନାର ତୀର ବାଲୁଚରେ ଝସ ମାଳ କରି ଯାଏ ।
ନିରେଖି ନୟନେ ନଟବର ଛବି ପଟ୍ଟରେ ଲଳିତା ସଖୀ ।
କପଟ ଧୂଳିରେ, ପଡ଼ୁଛି ଧନ, ମରିଯାଏଁ ସତେ ଏ କି ?

# ଗୀତ

କୁଆ ନଟପଟଳୀ ମୁକୁଟ ହେ, କାହିଁକି ଶ୍ରୀଅଙ୍ଗ ସୁଖ ?
କପଟ କଷ୍ଟେକ ଦିଶୁଛି ତ ଆଜ କରଳଧି ଚନ୍ଦ୍ରମୁଖ । ପଦ ।

ମଲୋପଲ ବାସି ହେଲା ପରି ଦିଶି ଯାଉଛି ଦୂରୁଁ ଶ୍ରୀଅଙ୍ଗ,
ନାସା ମାଳ ତିଳଫୁଲରୁ ଅନିଳ ପ୍ରସରୁଛି ବେଗ ବେଗ । ୧ ।

ମାପଉପବନ ନିକଟ ପବନ ସ୍ମରଶକୁ ଯେବେ ଡରି
ନିପାକୂଳ ସ୍ଥଳ ଏ ବଡ଼ ଶୀତଳ କୁହନ୍ତା ଟି କି ବିହାରି । ୨ ।

ନା ନାହିଁ କି ନୟନେ ନିଶି ଦିନ ଆହା ମରଇ ମୋ ଧନ,
ନବନୀତ ତିହୁଁ ମୃଦୁ ଦେହେଁ କାହୁଁ ସମ୍ଭବିଲା ଏ କଦନ ।୩।

ନବ ହେମଦ୍ୟୁତି ଅମଗ୍ରାଏ ନିତି ନିଅନ୍ତ ଫୁଲ ଏ ବନ୍ଧୁ,
ନେତ୍ରପଥେ ପଡ଼ିଗଲେ କି ସେ ଗୁଡ଼ ଯାଉନାହିଁ କ୍ୱିର ମନ୍ଧୁ ।୪।

ନ ବିହରି ଗୋପସଙ୍ଗୀଳ ! ଏ ଦାପ ଗହନରେ କିଛି ଦିନ,
ନରେଶମଣ୍ଡନ ଶ୍ରୀ ହରିଚନ୍ଦନ ଜଗଦ୍ଦେବ ସ୍ତବ ଯେନ । ୫ ।

---

## — ଗୀତକଥା —

ଲଳିତା କହିଲେ—କହୋ, ନବ ଛଇଳ, ଏ କି ଅବସ୍ଥା ତୁମର ?
ଚନ୍ଦ୍ର ମୁହଁଟି ତ କାହିଁକି କିହାତି ଶୁଖିଲି ଦିଶୁଛି ! ଦେହ କଅଣ ସୁଖ ନାହିଁ କି ?

୧—ଦୂରରୁ ଚାହିଁଲେ ଦିଶୁଛି ସତେ ଯେମିତି ନାଳ କଇଁଟିଏ ମଉଳି ପଡ଼ୁଛି ! ନେଳଆ ଖସା ଫୁଲ ପରି ସୁନ୍ଦର ନାକରୁ ତୁମର ଖର ନିଶ୍ୱାସ ପକାଉଛ ? କାହିଁକି ହେ, କଥା କଅଣ ?

୨ —ସତରେ ଯେବେ ଦେହ ସୁଖ ଲାଗୁନାଇଁ, ତେବେ ଏଠିଟାରେ ଏମିତି କାହିଁକି ବୁଲୁଛ ? ଯମୁନା କୂଳରେ ଏଇ କଦମ୍ବବଣର ଥଣ୍ଡା ପବନଟା ତମ ଦେହକୁ ଅଣହେତ କରିବ ଶ୍ୟାମ !

୩— ଆହା, ମରିଯାଉଥାଏଁ କିନା ! ଶୋଇ ପଡ଼ନ୍ତ ନାହିଁ ଟିକିଏ ହେଲେ ? ବନବାଡ଼ ଜମା କ'ଣ ତମକୁ ନିଦ ହେଉନାଇଁ କାହିଁ ? ଆହା, ଲହୁଣୀ ପିତୁଳାକୁ ଏ ଦଣ୍ଡ ସତେ କିଏ ଦେଲା ?

୪ – ଶୁଣିଛି, ସ୍ୱର୍ଗରୁ ସୁନାବରନା ଅପ୍‌ସରୀଏ ନିତି ଏ ବଣକୁ ଫୁଲ ତୋଳି ଆସନ୍ତି । ନଜରରେ ତୁମର, ସେମାନେ ପଡ଼ିଗଲେ କି ? ସେଇଥିପାଇଁ ସତେ ଆଜି ତମ ମନ-ଘୋଡ଼ା ଗୁଡ଼ି ଯାଉନାଇଁ ?

୫ ଏ ବଣଟା ବଡ଼ ଖରାପ । ଗୋପ-ଜୀବନ-ଧନ, ତମେ କିନା କେତେ ଆଜି ଏଠି ଚାଲିବୁଲି କରିବାଇଁ । ( ଶ୍ରୀ ହରିଚନ୍ଦନ ଜଗଦେବ ମହାରାଜାଙ୍କ ) ଜଣାଣ ଘେନ ।

---

## — ଶ୍ଳୋକାଂଶ—

(ଙ) ହାହା ହନ୍ତ ହତାସି କେନ ବଲସଲୀଲାଶ୍ରୁତେନୋଦଟା—
ଧର୍ମଂ ପର୍ଯ୍ୟୁଷିତୋତ୍ପଲାବଳିରୁଚ୍ଚ ମାସୀନ୍ନ ଧିତ୍ସେ ବପୁଃ ।
ନାଜ କ୍ରୀଡ଼ସି ପଞ୍ଚବାଣେପି ଦନାନ୍ୟଂମ୍ଭୋରୁହାକ୍ଷାଭକାନ୍,
ବାର୍ତ୍ତାଂ ନେଦମଖଣ୍ଡ ଶୈତ୍ୟବଭବ ମାର୍ତ୍ତଣ୍ଡପୁତ୍ର୍ୟାସ୍ତଟଂ ॥

ଚନ୍ଦ୍ରିକାପୀଡ଼ସୁନ୍ଦରେନ୍ଦ୍ର କଶୋରଚନ୍ଦ୍ରଚୂଡ଼ାମଣେ ତାଦୃଙ୍ନି-ରଲସକେଲିକଲାକଳାପଲାଳନଲାଳିତାସ୍ୟ ବପୁଷେ ଭବତୋ ଭବଦ୍ଧ ନ କଂ ହୃତମଶ୍ରାନ୍ତ୍ୟାଂ ବାହ୍ୟମାତଟପର୍ଯଟନଂ ।

**ଅର୍ଥ—**

ଲଳିତା—

କାହିଁକି ହେ ଶ୍ୟାମ !
ଇନ୍ଦ୍ର ନୀଳମଣି ଜିଣି
ସୁନ୍ଦର ଯେ ତନୁ,
ମଳିନ ଦିଶୁଛି ଆଜ
ବାସି ହେଲା ନୀଳ କଇଁ ସର ?
ଦେଖି ସତେ ଦୁଃଖ ଲାଗେ ମନେ ।
ଅଣହ୍ଵତ ମଣୁଛି ମୁଁ
ଯମୁନା-କୂଳିଆ ଶୀତ ବାଆ ।
ପାଞ୍ଚ ଛଅ ଦିନ ତୁମ୍ଭେ
ଗୋପାଳ ବାଳକ ତୁଲେ
ଘୁଡ଼ ଦିଅ ଖେଳାବୁଲା ଢଙ୍ଗ ।
ହେ ଶିଖୀଚୂଳିଆ, ନବଯୁବକ ପ୍ରଧାନ !
ଦଇବେ ତ ଅତି ସୁକୁମାର ତୁମ୍ଭେ
ମନେ ଆସେ ମୋର,
ନିତିଦିନ ଯମୁନା ତଟରେ ଆଉ
ନ ବୁଲ ଏଥର,—
ଯାଉନାହିଁ ଦେହରେ ତୁମ୍ଭର ।
ଶୁଣି ଲଳିତା ବଚନ,
କହିଲେ କହ୍ନାଇ.—

---

## 'ଚ'

### ଅନୁଚିନ୍ତା

ଚନ୍ଦ୍ରକଚୁଳିଆ କହିଲେ ସଜନୀ, ମଲ୍ଲି ଲେଉଟିଥିଲା ଯାହା,
ଚଞ୍ଚଳ ଦଇବ କେତେ ଭାଗ୍ୟ ବଳେ ଯୋଗାଇଲା ଆଣି ତାହା !
ଚତୁରୀ ରେ, ଶତେ ଜନମରେ ତୋର ସୁଝି ନ ପାରିବି ଋଣ
ସ୍ୱପି ରଖି ଆଉ କାହାରେ କହିବି ମନର ବେଦନା ଶୁଣ ।

### —ଗୀତ—

ଯହିଁ ଯହିଁ ତୋ ସରଣୀ କଳୁଷିଲୁ ରେ ତରୁଣୀ,
ଶଙ୍କିତ ପଦେ ଥିଲି ବସି,
ତନୁ ମଣିଲି ମୁଁ ତୋତେ, ଯହିଁ ଯା ଅନ୍ତରକତେ
ଯୁଗଚକ୍ଷୁ ମିଶାଇଲି ଆସି ରେ,
ଚଳାପାଙ୍ଗୀ !
ଚନ୍ଦ୍ରରୁ ଶପୂଡ଼ ସୁଧା ଝରି ଶରି ତୃପ୍ତିରର ମୁଖ ଭରି,
ଯୁଗ୍ମୁର୍ଯ୍ୟ କୃପାନ୍ତୁ ଗୁଣ-ନିଧି ରଖିଲୁ କି ପ୍ରାଣ
ଦେଖିଲି ମୁଁ ଏତେ ସରି କରି ରେ । ୧ ।
ଚେତାଥିଲି ପରି କଣ୍ଠ ପ୍ରଶ୍ନିତ ତ ହେଉଅଛି
ଶକ୍ରଣ ତ ଦଶୁଛି ମୋ ଦେହ,
ଶହି କି ଲାଞ୍ଛନ ସତେ ଯମରଶକୁଳ ! ମୋତେ
ଚହକାଇ ପଶୁରିଲି କହ ରେ,
ଚଳାପାଙ୍ଗି !
ତୁମ୍ଭି ଉଦନନ୍ଦନାର ମାର ଚନ୍ଦ୍ରକାଚମ୍ବୁ ଭୁଷାରସାର
ଯୁଗୁ ମାରୁତର ତରୁ-ତଳ ଶୀତଳ ହେଉଛୁ
ଶନାଏ ତ ଖେଦ ନାହିଁ ମୋର ରେ ।୨।

ଚୂଳ ହଳଦରେ ଘେର   ଚରାଉଥାନ୍ତ ବାଛୁରୀ
ଚୂଳମୁକୁଟିଆ ସଖାମାନେ,
ଚରାମରା ଶୃଙ୍ଗ ବେଣୁ   ବାଦ୍ୟନାଦ ଶୁଣୁ ଶୁଣୁ
ଶେଷ ହୁଏ ଦିନ ଦିନେ ଦିନେ ରେ
ଚଳାପାଙ୍ଗେ !
ଚୂମ୍ବି ବାରୁଣୀକ ବଦନଦ୍ୟୁତି   ଚପଳେ ଅମ୍ବର ବରଜନ୍ତ,
ଚରମଭାଗ ମୋ ଭାଗ ଲାଗି ନାହିଁ ଭ୍ରମେ ଡର
ଚମକିତ ନାହିଁ ମୋର ଚିତ୍ତ ରେ । ୩ ।
ଚୂମୀକର ଚୂଡ଼ାଶିଖା—   ମତ୍ତ ସେ କେଉଁ ଅମରା
ଚୂଖି ନାହିଁ ଦିନେ ମୋ ନୟନ,
ଚମତ୍କାର କଥା ଦେଖି   କପଟ ପେଟରେ ରଖି
ତୋତେ ନିକ ନ କହନ୍ତ ଧନ ରେ,
ଚଳାପାଙ୍ଗି !
ଚରାଚର ଚୂଳ ଭୟମୟ   ଚକଟି ଦେଲୁ ମୋ ହୃଦାଶୟ
ଚରଣ ଯୁଗକୁ ତୋର ବନ୍ଦେ ଅଷ୍ଟଦୁର୍ଗେଶ୍ୱର
ଚୈର ନାହିଁ ଥିଲେହେଁ ବଞ୍ଚାଅ ରେ । ୪ ।
ରାଗ—ପଞ୍ଚମ ବରାଡ଼ୀ । ତାଳ—ତ୍ରିପୁଟ ।

---

## ଗୀତକଥା—

୧—ତୋ'ବାଟ ଚାହିଁ ଚାହିଁ ମୁଁ କାନ୍ଥପିଣ୍ଡୁଲାଟି ପର ବସି ରହିଥିଲି ସଖି ! ଏତିକି ବେଳକୁ ତୁ ମନ ଜାଣିଲାପରି ଅଚାନକରେ ଆସି ଆଖିରେ ଆଖି ମିଶେଇ ଦେଲୁ । ସତେ ଯେମିତି, କାଳ-କାଳକର ଶୋଷୀ ଚୂଣ୍ଡିରେ ତୁ ଚନ୍ଦ୍ରରୁ ଅମୃତ ଚପୁଡ଼ି ତାକୁ ଖୁଆଇ ଦେଲୁ । ଦୟାବନ୍ତି ଚତୁରୀ ଲୋ, ତୋ ଆସିବାଟା ମତେ ଠିକ୍ ସେମିତି ଲାଗିଲା ।

୨—ମତେ ତ ଲାଗୁଛି ମୋର ବେଶ୍ ଚେତା ଅଛି । ଦେହ ତ ମୋର ଚକ୍‌ଚକ ଦିଶୁଛି । ଆଉ ତୁ କ'ଣ ଏମିତି ବାଣ ମୋ ଦେହ ସୁଖ ନାହିଁକି ବୋଲି ପଚାରିଲୁ ମ ? ସତରେ ସୁନ୍ଦରୀ, ଯମୁନା ପାଣି ପିଇ, ଚନ୍ଦ୍ରର ଶୀତଳ କିରଣ ତଳେ ବୁଲି, ସୁନ୍ଦର ପବନ ବାଜ ଗଛ ଗୁଡ଼ିକ ବଡ଼ ଥଣ୍ଡା ଲାଗୁଥିବାରୁ ଟିକିଏ ଏଠି ବସିପଡ଼ିଥିଲି । ତୋ' କଥା ଶୁଣି ମୁଁ ତାଟକା ହୋଇଗଲି ।

୩—ମଥାରେ ସୁନ୍ଦର ଚୂଳ ବାନ୍ଧି, ସାଥୀ ପିଲାଏ ମୋ ଚାରିପାଖ-ଯାକ ବୁଲି ବୁଲି ବାଛୁରୀ ଚରାଉ ଥାଆନ୍ତି । ସିଙ୍ଗା, ବେଣୁନାଦ ଶୁଣୁ ଶୁଣୁ କେତେବେଳେ ମୋ ଦିନ କୁଆଡ଼େ ସରିଯାଏ ; ମୋତେ ଜଣା ପଡ଼େ ନାହିଁ । ସୂର୍ଯ୍ୟ ପଶ୍ଚିମରେ ବୁଡ଼ି ଯାଆନ୍ତି ଏମିତି ଦିନେ ଦିନେ । କାହିଁ କେବେ ହେଲେ ତ ମୋ ପିଠିପଟ ମାଡ଼ି ମାଡ଼ି ପଡ଼ି ନାହିଁ କି ଗ୍ରହଣରେ ଦିନେ ହେଲେ ତ ମୁଁ ଚମକି ନାହିଁ ।

୪—ଆଖି ମୋର ଦିନେ ହେଲେ ସୁନାବରନା ଅପ୍‌ସରୀ କେମିତିକା ବୋଲି ତ ଦେଖି ନାହିଁ । ସଖୀ ମ, ଏତେ ବଡ଼ ତାଟକା କଥାଟାଏ ଦେଖି ମୁଁ କ'ଣ ସତେ ଆଉ ତତେ କହି ନଥାନ୍ତି ? ତୋ' କଥା ଶୁଣି ମନଟା ମୋର ଖାଲି ଘାଣ୍ଟିଚକଟି ହେଉଛି । ମୋ ଜାଣିବାରେ ମୁଁ କାହାରି କିଛି ଚୋରେଇ ନାହିଁ ତ । ଆଉ ଯଦିବା ସେମିତି କିଛି ହୋଇଥିବ, ମତେ ତୁ ବଞ୍ଚାଅ । (ଆଠଗଡ଼ ରାଜା ତୋ' ପାଦତଳେ ପଡ଼ୁଛନ୍ତି )

---

## — ଶ୍ଳୋକାଂଶ —

(ଚ) କଲ୍ୟାଣଂ ବଲ୍ଲବାନାଂ ବିଗଳିତବୟସାଂ କଂ ସ୍ୱଦାରୈରୁଦାରୈଃ
କାଚିଦ୍ ବାଲା ବଲୀନାଂ ଶ୍ରିୟମନୁଭବସି ପ୍ରତ୍ୟହଂ ସତ୍ୟସନ୍ଧେ,
ଘୀନଶ୍ଚିନ୍ତାମଣୀନାଂ ଚତ୍ତମିବଜନତୟାଂ ତ୍ୱାଂ ପ୍ରପଦ୍ୟାସି କୃଷ୍ଣ—
ଶ୍ଚିହ୍ନଂ ସନ୍ଧ୍ୟାତମାନା ବିଧୂନ୍ୱନ୍ତି ମମ ଦକ୍ଷୁ ଯାସି ନେଦାନ୍ଧଥର୍ତ୍ତଂ ॥

କମଦ୍ୟ ଲଲିତେ ଧରଣୀପୂର୍ଣଚରମସଞ୍ଚାରଚରିବଗ୍ରହସ୍ୱନ୍ଦ୍ୱଲରବି-ଚନ୍ଦ୍ରକରଜକରବ୍ୟନ୍ତକରଚନ୍ଦ୍ରାଙ୍କୁରକେଦାରଂ ପ୍ରତି କୃଷ୍ଣେୟବ ଡଷ୍ଟ୍ୟାଣ ପ୍ରବିଷ୍ଟଂ ସ୍ତମାଣସ୍ୱା ତୃସ୍ୱା ।

**ଅର୍ଥ :—**

"ଲଳିତେ ଗୋ,
ସୁଖରେ ଅଛନ୍ତି ନନ୍ଦ
ବୃଦ୍ଧ ଯେତେ ବରଜ ଗୋପାଳେ
ଯେନ ତାଙ୍କ
ଉଦାର ସ୍ୱଭାବଶୀଳା
ଗୋପର ଗୋପୀକା ?
ସତେ ଲୋ ସୁନ୍ଦରୀ !
ସ୍ମରଣ ମାତ୍ରକେ, ଯାହା
ମିଳଇ ତୋ ଶୁଭ ଦରଶନ
ମଣିଲ ମୁଁ,
ଦରିଦ୍ର ଲଭିଲା ସର
ଏକାବେଳେ କୋଟି ଚିନ୍ତାମଣି ।
ଖର ରବି କରେ
ଜଳି ପୋଡ଼ି ଯାଉଥିବା କ୍ଷେତ୍ର

ମଙ୍ଗଳ ଚଳନ ବେଳେ
ପ୍ରବଳ ବରଷା ଲଭି
ସୁଖେ ଯଥା ତୋଳେ ମଥା ତାର ;
ସେହିମନ୍ତ —
ଭାଗ୍ୟବଳେ ମୋର
ଆସିଲୁ ଗୋ ଲେଉଡ଼ି କାଳରେ ।
ଜାଣୁଛି ମୁଁ—
ହେବ ଆଶ୍ଚେ ପୂର୍ଣ୍ଣମନୋରଥ ।
—ଶ୍ୟାମ ମୁଖୁ ଶୁଣି ଏହି ବାଣୀ
କହିଲେ ଲଳିତା :—

---

## ଛ

### ଅନୁଚନ୍ଦ୍ରା

**ଛଳେ ନାଗ୍ନ ଜାଡ ପୁରୁଷରେ ଝଡ଼ ଜଡ଼ ପଶ୍ୱ ଛଡ଼ ଟେକେ,**
**ଛପାଛପି କଥା ନ ପଟେ ତା' ପଟେ ମନେ ପଶି ମୁଖ ଦେଖେ ।**
**ଶୁଣି ନେଲ ସର କଥାରୁ ଲଳିତା ସହଜେ ସିହାଣୀ ସେ ତ**
**ଛୁଟି ଶିଶ୍ରମୁଖ କହିଲ :—ମୋହନ ଛଦରମ କଥା ଏ ତ ।**

### ଗୀତ

ଛଳବାହ୍ମାମାଣ ହେ । ଗୁଡ଼ି ଏ ସାହସ ହେ । ପଦ ।
ଛବ ତ ଆବଳ ଦଶେ, ଛପିବାର ଅଛୁ କ ସେ । ୧ ।
ଛଠା କାହା କଠାକ୍ଷର । ଛୁଷି ହେଲ କ ବଷଠେ । ୨ ।

ଛିଲରୁ ତ ଚନ୍ଦ୍ରା ବଳ, ଗୁଣରେ ଗଲ୍ନ ଗଳ । ୩ ।
ଛୁଟି ଯାଇ ବ ଚେତନା, ଛଟପଟ ହେବ ସିନା । ୪ ।
ଛଣା ସୁଧା ପରା ହସେ, ଛୁଇଁ ଦେଲେ ବିଷଟି ସେ । ୫ ।
ଛନ୍ଧ ମନ ଭୁମ୍ନ ଗୁଣେ । ଛ ଦୁଇ ଦୁର୍ଗେଶ ଭଣେ । ୬ ।
ରାଗ ମୁଖାରୀ । ତାଳ-ତ୍ରିପଟ ।

---

## — ଗୀତକଥା —

୧—କପଟିଆ ! ସାହସୀଆପଣ କର ଆଉ କଥା ଗୁରାଏ କହ ନାହିଁ ।
ରୂପ ତ ମଳନ ଦିଶୁଚ । ଯେତେ ଠକଲେ କ'ଣ ହେବ ?
୨—ଏକଥା କ'ଣ ଲୁଚେ ? କୋଉ ନାଗରର ନୟନ କଟାକ୍ଷ
ବାଜି ତ ଗୁଣରେ ଘାଆ ହେଲଣି କି କ'ଣ ?
୩—କୁନ୍ତରୁ ବଳ କରି ସେଇ ଚନ୍ଦ୍ରା ତମ ଗୁଣରେ ଭୂକଗଲଣି ।
୪—ତମର ଭଲ ମନ୍ଦ ଜ୍ଞାନ ଏଥର ବୁଡ଼ିଯାଇ ଖାଲି ଛଟ ପଟ
ହେବ ସିନା ।
୫—ଗୁହ୍ନିଁଦେଲେ ଅମୃତ ଫଳ ସିନା, ବାକି ଛୁଇଁଲେ ସେ ବିଷ ଟି !
୬—ତମ ଗୁଣରେ ମନ ମଜାଇ ଆଠଗଡ଼ ରାଜା ଏକଥା କହିଲେ ।

---

## ଶ୍ଳୋକାଂଶ

[ଛ] ଅଞ୍ଜନ ଭଜନସ୍ୟଂ ବହ୍ନାସ୍ୟ ରଜୁତ ମାଳଙ୍ଗସ୍ତିଥ୍ବା ମନ-
ହ୍ଲାଣ୍ଢଳାଦବରମେଖଳାରସ୍ୟ ଭବନ୍ନେହାଞ୍ଚଳୋଦଣ୍ଡନଂ ।
ନେ ଚେଦା ଦଧବଣଦସାରଦଦଣା ମେତ୍ତୈତ୍ୟଦୃଶଂ ସୂନ୍ଦସ୍ଯ
କାନ୍ତାପଞ୍ଚସ୍ୱପଞ୍ଚଯାସ୍ୟନ ବପୁତ୍ତ୍ରେକ୍ଷାମତା ମେଷତ୍ତ ।

ମୋହନ ନଟପଟଲୋଦ୍ଭଟମୁକୁଟମଣେୋନ୍ଦ୍ରଃ ସନ୍ଧ୍ୟାପମନ୍ତ୍ରରେଣ
ଫଳମିଢ ପ୍ରଶ୍ନୟତେ ତଦକୈତବକୁଶଳତାଲତାସ୍ତାଃ ।

**ଅର୍ଥ :—**

ଲଳିତା କହିଲେ :—
ଛଳ ଗୁଡ଼ ଛଇଳ କହ୍ନାଇଁ,
ହୁଅ ହେ ସରଳ,
ଦୂରକର ମନ ଚଞ୍ଚଳତା ।
କହୁଅଛ ମୋତେ ଶ୍ୟାମ,
ନୟନ ସଙ୍କେତେ—
ଯେନା କଲ କଥା ମୋର ବୋଲ ;
ନୋହିଲେ ଜାଣିଥା'
କାମିନୀ ମନମୋହନ ଏ ସୁଠାମ ତନୁ
କ୍ଷୀଣ ହେବ ଦିନା ଦିନେ,
ମନ ସନ୍ତାପରେ ।
ନାଚୁଆ ନାଗର,
କପଟ-ତରୁରେ ଭଲ
ଅନ୍ତର୍ଦାହ ବନା କହ,
କି ଫଳ ଫଳିବ ଆଉ ?

---

**ଜ**

**ଅନୁଭକ୍ତା**

**ଜାଣେନ୍ତି ମୋହନ ଜଗି ଦାସୀ ମନ ବନୋଦ୍ଧି ଭଣିଲେ ତେଣୁ ,**
**ଜପ, ତପ, ଯନ୍ତ୍ର-ମନ୍ତ୍ର ମୋହନା ସେ କଶୋରୀଙ୍କି ଏକା ଯେଣୁ ।**

**ଜର-ଗର ସର, ଦେହେ ତାଡ ଭର ଦେଉଅଛ ମୋରେ ସାର,**
**ଜଟିଳା ନୋହ୍ନ ତୁ ଲଳିତା ସଜନୀ, ଯାହା ଜୁଅ ଆହା କର ।**

## — ଗୀତ —

ଜାଣିଛି ମୁଁ ଏତେ ମାନ ଗୋ ଲଳିତେ,
ଯାହା ଇଚ୍ଛା ତୋର ତାହା କର,
ଜ୍ୱଳନରୁ ବଳ ସେହ୍ନଦନୁ କେଳ—
କାଟରେ, ବଭ୍ରବଣନାହାକର । ପଦ ।
ଜଣକେତେ ବ୍ରଜଶିଶୁ ଥିଲେ ନିଜ ପୁରୁଁ
ଆସୁଥିଲ ଖେଳାଇ ସମଜ,
ଜମ୍ବାରାତମଣି ଗିରାନ୍ଦ୍ରକୁ ଜିଣିବାର
ପୁରେ ହେଲା ମୋ ନଜର । ୧ ।
ଜାତ କୁରୁବନ୍ଦ ବାତାଯୂନବୃନ୍ଦ,
ଅନାଇଁ ମୁଁ ଗୃଲୁଥିଲ ମନ୍ଦ ମନ୍ଦ,
ଜଙ୍ଗମ ହେବାର ଜମ୍ବୁନଦ ସାର
ଶୀର ଷ୍ଫୁରିଲା ସେ କି ପ୍ରକାର । ୨ ।
ଜୀବନଦ-ନୀଳଜଳଜଯୁଗଳ
ବଧୁ ବମ୍ବେ ହୋଇ ବଳାସ ବଲ୍ଲୋଳ,
ଜାତ କଲା ଗର ଜରଜର ଶର—
ନିକର ବରଷା ଖରତର । ୩ ।
ଜହରକୁ ଗୋଳ ଦେଲାପରି ଗିଳ
ଦେହରେ ମୋହର ପୀଡ଼ାଗଲା ବଳ,
ଜୀବନାଶ ଟଳ ଯାଉଅଛି କଳ
ପାରୁନାହିଁ ମୁଁ ମୋ ହୃଦନ୍ତର । ୪ ।

ଜନମନୋହାସ୍ୟ ସେ ବଚନ ଶିଖ୍ୟ,
କାହା ନେତ୍ର-ପାତେ ଯାଇନାହିଁ ପୂରି,
ଜଗଦ୍ଦେବ ହରିଚନ୍ଦନ ମୋହରି
ନାମ କହୁଅଛୁ ନିରନ୍ତର । ୫ ।
ରାଗ—କେଦାର—ତାଳ-ତ୍ରିପୁଟା ।

— — —

## — ଗାଁଉକଥା —

ଲଳତେ, ଚନ୍ଦ୍ରକିରଣ ମୋତେ ସେହ୍ନାହନରୁ ନିଆଁ ଧାସପରି ଲାଗୁଚି । ମୁଁ ଏତିକ ମାତ୍ର ଜାଣୁଚି, ଏଣିକ ତୋର ଯାହା ମନ ତା’ କର ।

୧ —ହନେ ଘରୁ ମୁଁ ସାଥୀମାନଙ୍କ ସଙ୍ଗରେ ଗାଈ, ବାଛୁରୀ ଗୋଠରୁ ଖେଦେଇ ବୁଲେଇ ଆଣିବା ବେଳକୁ ବାଟରେ ଗୋଟିଏ ବଡ଼ଘର ଦେଖିଲି । ମନେହେଲା ଯେମିତି ସେ ଘରଟି ଇନ୍ଦ୍ର-ନୀଳମଣି ପାହାଡ଼ଠାରୁ ଆଉରି ବଡ଼ ।

୨—ସେଇ ଘରର ଝରକାଗୁଡ଼ିକ ଭଲ ରଙ୍ଗ—ପଥରରେ ଗଢ଼ା । ତାକୁ ଗୃହିଁ ଧୀରେ ଧୀରେ ଆସୁ ଆସୁ ଘରଭିତରେ ଗୋଟିଏ ବଚନ ଚଳନ୍ତ ସୁନା ( ପ୍ରତିମା )ର ଚହଟ ମୋ ଆଖିରେ ପଡ଼ିଲା ।

୩—ସହ୍ନି, ଚନ୍ଦ୍ର ଆଉ ପଦ୍ମ ଏକାବେଳରେ ଫୁଟିବା ଅସମ୍ଭବ ସତ, ବାଙ୍କା ସେଇଠି ମୁଁ ଦୁହିଙ୍କି ଏକାଠି ଦେଖିଲି, ବର୍ଷଣା ମେଘପରି ନୀଳପଦ୍ମ ଦୁଇଟି ଯେମିତି ଚନ୍ଦ୍ରମଣ୍ଡଳ ଭିତରେ ଚଳ ଚଳ ହେଉଥିଲା । ଆଉ ସେଥିରୁ ବିଷବୋଳା ଶରଗୁଡ଼ିଏ ବର୍ଷାପରି ବାହାରି ଆସି ମୋତେ କଲବଲ କରି ପକାଇଲା ।

୪—ବିଷକୁ ଗୋଳକରି ପିଇଲେ ଯେମିତି କଷ୍ଟ ହୁଏ, ସେଇ ଶର ମୋ ଦେହରେ ବାଜି, ତା' ଠାରୁ ବଳକରି ପୀଡ଼ା ଦେଲା । ମୋ'ର ଯେମିତି ଆଉ ଜୀବନର ଆଶା ନାହିଁ । ହୃଦୟ ଭିତରଟା ଯେ କଅଣ ହୋଇ ଯାଉଛି, ମୁଁ କହିପାରୁ ନାହିଁ ।

୫—ସେ ମନୋହର ବିଚିତ୍ର ଶୋଭା ଦେଖି ଭଲା କାହା ଆଖି ପୂରିଉଠି ନାହିଁ ?

ହରିଚନ୍ଦନ ଜଗଦ୍ଦେବ ସବୁବେଳେ ମୋ ନାମ ସ୍ମରଣ କରୁଚନ୍ତି ।

---

### ଶ୍ଳୋକାଂଶ

ତ୍ୱମସ୍ନେହକାଭ୍ୟଧିସ୍ୱିନା ତ୍ୱମ୍ପି ନାପଦେଶଃ
ସଂସ୍ପୃଶ୍ୟତେ ମମ ହୃଦା କଥୟାମି ତଥ୍ୟଂ
ବସ୍ତ୍ରେ କମସ୍ତ୍ୟପିତ ସୌଧଲସଦ୍‌ବଲାସଂ
ତଦ୍‌ ସାକ୍ଷଣାଦଗଦ ଝଦ୍ଧୃଣ ଉଲ୍ଲସ ।

ସହଚରି ଲଳିତେ, ବିମଳଜଳଦଲନୋପଳପ୍ରାସାଦଚୁଳଚେଲ-ବଲ୍ଲରୀ ଖେଲାଲ୍ଲୋଳଲ୍ଲୋଚନେନ ମୟା ପିଷ୍ଟପୋଲାସ୍ତ ଚେଷ୍ଟାବିଶିଷ୍ଟା କାଚନ କାଞ୍ଚନମୟୀ ପଞ୍ଚାଳୀ ପାଞ୍ଚାଳିକା ତଦଧଃ ସମୀକ୍ଷ୍ୟନୋପକଣ୍ଠେ ଯନ୍ତ୍ରପ୍ରଭୃତ୍ୟବଲୋକ ଚକ୍ରପ୍ରଭୃତ୍ୟେତାଦୃଗବସ୍ଥେନ ମୟା ଛାୟିତ ଇତି କେବଳଂ ଜାନାମି ।

**ଅର୍ଥ** :—

ସ୍ନେହ ତୋର ଏକା ମୋର
ଆନନ୍ଦ-ସର୍ବସ୍ୱ ।
କପଟ କରିବି କାହା ପାଶେ ?
ସତ୍ୟ ମୁହିଁ କହୁଚି ଲଳିତେ !
ଇନ୍ଦ୍ରନୀଳମଣି ଗଢ଼ା
ନବରଙ୍ଗେ ସଖି !

ଖେଳୁଥିବା
ଅଜଣା କାହାରେ ଦେଖି
ଜାତ ହେଲା ଅଙ୍ଗେ ମୋର
ଏ ବିଷମ ବ୍ୟାଧି ।
ଉଡ଼ୁଥିଲା ବଇରଖ ସେ ନବର ଶିଖେ,
ଚାହିଁ ତାକୁ ଚାଲୁ ଚାଲୁ ବାଟ
ଚମକ ଉଠିଲି ଦେଖି
ସେ ନବର ବାତାୟନ ପଟେ,
ଅପରୂପ ସୁନ୍ଦରୀଏ ;—କନକ ବରଣୀ
ଗଲା ଚାଲି ଆଖିର ପଲକେ ।
ସେହି ଦିନୁ—
ସେହିଦିନୁ ସଖୀ ସତେ
ଘଟିଛି ଏ ଦୁରୁଦଶା ମୋର;
ଏତିକ ମାତ୍ରକ ଜଣା ମତେ ।

---

**୧୦**

**ଅନୁଚନ୍ତା**

**ନାହିଁ ନାହିଁ ମୁଖେ, ଶ୍ୟାମ ତନୁଶିଖି ଝାଉଁଳା ତମାଳ ସବୁ,**
**ଝାଙ୍କିଛୁ ଅମଳ—ଏ କଥା ନର୍ମିଳ ଛଇଳା ପାଇଲି ବାଇ ।**
**ଝରଫୁଲ କଲ କଲ କଣୋଲରେ କାହିଁକ ବସୁର ଭଳ ?**
**ଝାଡ଼ ବିନୋଦିଆ ! ଏ କ କଲ ବୋଲି ଲଳିତା ଭଣିତା କଲି :—**

— ଗୀତ —

ଝଗଡ଼ ମନ ହେଲି ହେ ଶ୍ୟାମ ।
ଝିମିଟ ହେବାକୁ ସହିପ୍ରେ ଯାମ । ପଦ ।

ଝାଉଁଳିବା ନବ ତମାଳ ରମା, ଝିଙ୍କିଆଣି ଅଙ୍ଗେ କଲଣି ଜମା ।୧।
ଝଡ଼ିବ ବଳ କୋମଳ ଛାତିରୁ, ଝଷଧ୍ୱଜ ଝାଞ୍ଜିପୀଡ଼ା ତାଡ଼ିରୁ ।୨।
ଝୁମି ଝୁମି ଲୁଠି ପୃଷ୍ଠ ରସାଳ, ଝୁରିବାର ଏକା ହୋଇବ ସାର ।୩।
ଝଳ ପାଞ୍ଚାଳୀ ଝଟକେ ନାହିଁକି ? ଝୋଲମାଇଲା ତୁମ୍ଭଙ୍କୁ କାହିଁକି ?।୪।
ଝଲକ ଗଲ କୃଷ୍ଣ ଅକାରଣେ, ଝାଡ଼ଖଣ୍ଡରସା ବାଦସା ଭଣେ ।୫।

ରାଗ—ଝିଂଝୋଟି । ତାଳ ଝୁଲା

## — ଗୀତକଥା —

ଲଳିତା କହିଲେ :—

ଶ୍ୟାମ, ମିଛଟାରେ ତମେ ଧନ୍ଦ ହେଉଛ ସିନା ! ତମକୁ ଖାଲି ମୁହୂର୍ତ୍ତକ କାଳ ହଜାର ରାତିପରି ଲାଗିବ ।

୧—ଗୁଏଁ ଗୁଏଁ ନିଜ ଦେହକୁ ଝାଉଁଳି ପଡ଼ିଥିବା ଗଜା ତମାଳ ପରି କଲଣି ।

୨—ଏଣିକି କନ୍ଦର୍ପ-ପୀଡ଼ା ତମକୁ ଝାଞ୍ଜି ପବନ ପରି ବାଧିବ । ଛାତିରୁ ତମର ବଳ ଓହରିଯିବ ।

୩—ତମେ ନିଶା ଖାଇବା ଲୋକ ଭଳି ଭୂଇଁରେ ଗଡ଼ି ଝୁରିବାଟା ସାର ହେବ ସିନା, ନୋହିଲେ ଆଉ କିଛି ଫଳ ନାହିଁ ।

୪—ସୁନା ପିତୁଳା କ'ଣ ଚକ ଚକ ଦିଶେ ନାହିଁ ଯେ ତମକୁ ଏଥିପାଇଁ ଝୋଲ ମାରିନେଲା କାହିଁକି ?

୫—ଝାଡ଼ଖଣ୍ଡ ଆଠଗଡ଼ର ରାଜା କହିଲେ "କୃଷ୍ଣ, ଛୁଞ୍ଚାଟାରେ ତମେ ଭଳକି ଗଲ ସିନା ।"

## — ଶ୍ଳୋକାଂଶ —

ଖର୍ବଃ ପାର୍ବଣଶର୍ବରଢଗୁର୍ବୈର୍ବପୀଡ଼୍ୟ ବସ୍ତ୍ୱଂ ଛୁଧା,
ମର୍ତ୍ତ୍ୟଃ କ୍ୱାପି ସୁଧାମମୂନ୍ ବସୁଧାଲୋକେ ପିବନ୍ତ୍ୟାତୁରଃ ।

ବ୍ୟର୍ଥଂ ପ୍ରାର୍ଥନୟା କଦର୍ଥୟସି ମାଂ ଗତ୍ୱା ଦୁରାଶାଂ କଥମ୍ ,
ସା କିଂ ମଦ୍‌ବଶମେଷ୍ୟତି ହନ୍ତ ବସ୍ତୁତସ୍ତାରାଧିକା ରାଧିକା ।
କେଶବ, ଲୂତାତନ୍ତୁବଳୟବାଗୁରାଭିଃ କର୍ଣ୍ଣୀରବରାଜୀବ
ରାଜୀବଲୋଚନା ଯାସ୍ତୁ ଦୃଶୀଭବଂଶୀକର୍ତ୍ତୁମଶକ୍ୟା ॥

**ଅର୍ଥ :—**

ବିଶ୍ୱରଲ ଘନଶ୍ୟାମ !
ଏ ଜଗତେ ଦେଖିଛ କି କାହିଁ
ପୂର୍ଣ୍ଣଚନ୍ଦ୍ର ଚପୁଡ଼ି, ବାମନ
ମେଣ୍ଟାଇଛି କ୍ଷୁଧା ସୁଧା ପିଇ ?
ଅକାରଣେ ଅସମ୍ଭବ କଥା ପୋଷି ମନେ
କାକୁତି ମିନତି ସିନା କରୁଛ କହ୍ନାର !
ବୁଢ଼ିଆଣୀ ସୂତା କାହିଁ ବାନ୍ଧୁଛି ସିଂହକୁ ?
ଅସମ୍ଭବ ଆଶା ।
କମଳ-ନୟନା ରାଧା,
ଭୁଲିବ କି ଆମ୍ଭର ବଚନେ ?
ଧରା ଦେଲେ ଦେଇପାରେ
ଆକାଶର ତାରା,
ହେଲେ ; କିଶୋରୀ କି ଧରା ଦେବ
କଥାରେ ମୋହର ?

---

ଶ୍ରେ

**ଅନୁରକ୍ତା**

**ନୀଳଇନ୍ଦ୍ରୀବର ନୟନ-ଦଳରୁ ଝରଇ ଲୋତକ ଧାର,**
**ନୟନରେ ଅଛ ନୀଚ ଜନ ସର ; ଧରି ଗୋପଗୋଇ କର ;**

**ନବଘନଶ୍ୟାମ କହୁଲେ—ଲଳିତା, ଭରସା ନଭରସା ସଖି,
ନଷ୍ଟ ଘନରୁ ଜଣାଏ ମାତର ବାର ମୁଁ ରହୁଚ ଟାକ ।**

— ଗୀତ —

ନ ଭଙ୍ଗରେ ଶୁଭଙ୍ଗି, ଭରଣି ହୁଅ ସାହା । ପଦ ।
ନୋହିଲେ ତୁ ପରହାଣ, ନିର୍ଦ୍ଦୟ ଅତନୁ ବାଣ
ନିଃଶେଷ କଲାଣି ଦେହ ଲାହା । ୧ ।
ନୀପକୁଞ୍ଜ ଉପକଣ୍ଠେ, ନ୍ୟସ୍ତ କରାଅ ମୋ କଣ୍ଠେ
ନାଗରୀନ୍ଦ୍ର ନିରୂପମ ବାହା । ୨ ।
ନେହାନ୍ତ ବିଳାସ ତାର, ନିଦାନ ଏ ଅବସ୍ଥାର,
ନିରେଖି ଉଚାରୁ ଥରେ ଆହା । ୩ ।
ନିଷ୍ଠୁର ଏ ଘେନ ଚତୁରେ, ନ ଥାଇବ କଦାଚତେ,
ନ ବତାଇଲେ ତୁ ସୁଖ ରାହା । ୪ ।
ନାଥ ଅଷ୍ଟଦୁର୍ଗର ଯେ ନିତ୍ତ ସେ ମୋ ପାଦେ ଭଜେ
ନିଧବଟି ନ କଲେ ତୁ ତାହା । ୫ ।
ରାଗ—ତୋଡ଼ି (ମିଶ୍ର) ତାଳ—ଏକତାଳ

---

— **ଗୀତକଥା** —

**ଶ୍ରୀକୃଷ୍ଣ କହୁଲେ—ସୁନ୍ଦର !** ଟାଳ ଦେ'ନା ମୋ **କଥା** । **ଟିକ**ଏ ମୋର ସାହା ହୁଅ !

୧—ତୁ ମୋର ସହାୟ ନୋହିଲେ ନିଷ୍ଠୁର କନ୍ଦର୍ପ, ବାଣ ବିନ୍ଧ ମୋ ଦେହର ସାର ନିଗାଡ଼ି ଦେବ ।

୨—ସଖି, ଏ କଦମ୍ବ ବଣ ପାଖରେ ସେ ନାଗରୀ ଶିରୋମଣିର ଅତି କମନୀୟ ବାହୁ ଦୁଇଟିକ ମୋ ଗଳାରେ ଲମ୍ବାଇ ଦେ ।

୩—ତାହାର କଟାକ୍ଷ ଭଙ୍ଗୀ ଏକା ମୋର ଏ ଅବସ୍ଥାର ମୂଳ କାରଣ । ଏଇତକ ଦେଖି ସେ ଖାଲି ଥରେ 'ଆହା' ପଦକ କହୁ ।

୪– ସତେ ସଖୀ, ତୁ ମତେ ଯେବେ ମୋ ସୁଖର ବାଟ ନ ବଢେଇବୁ, ମୁଁ ଆଉ କେବେ ହେଲେ ଜୀଇ ପାରିବ ନାହିଁ । ଏକଥା ତୁ ନିଶ୍ଚିତ ବୋଲି ଜାଣ ।

୫—ଆଠଗଡ଼ ରଜା ନିତି ମୋ ପାଦ ସେବା କରୁଚି । ତୁ ଏତିକି ନ କଲେ ସେ ନିନ୍ଦା କରିବଟି ।

—ଶ୍ଳୋକାଂଶ—

ଦୃଷ୍ଟାଂ ନବ୍ୟାଂ ଭବ୍ୟାଂ ତରୁଣି ତରଣିଂ ତେ ମୃଦୁଗିରଂ,
କଶ୍ଚେଷ୍ୟ କନ୍ଦର୍ପାଂମ୍ବୁନିଧିତରଣାସ୍ୱେତ୍ୟହରହଃ ।
ସ୍ଥିତାୟାଶା ନାସାନଲଲବବଲାସାସ୍ତୁ ନନୁ ତାଂ
ରୁଷା ସାଙ୍ଗମ୍ ଭଙ୍ଗମ୍ ନ ନୟ ବଦ୍ଧିରଙ୍ଗମ୍ ନ କୁରୁ ମାଂ ॥

ନୋଚେତଂ ସଖି, ସାଧାରଣେତରସୁଖପୌଧୋର୍ଦ୍ଧ୍ୱ ସଞ୍ଚାରନ୍ନାଲୋ-ବ୍ୟାକୁସାହସିକସ୍ୟ ମମାଶାଧିରୋହଣୀହରଣଂ ।

ସଜନୀରେ !
ବଚନ ତୋ ମଧୁରୁ ମଧୁର,
ନଉକା ସେ ମୋର ସଖୀ,
ପାର ହେବ ମଦନ-ସିନ୍ଧୁ କୁ ବୋଲି
ମନାସିଛୁ ମନେ ।
ଅନୁସରି ତୋରେ ଗୋସି,
ଲଙ୍ଘିବ ସାଗର ।
ରୁଷି ମୋ ଆଶାକୁ ଆଉ ନିଦଅ ବନାଶି ।
ପର ପରି କରି ମୋତେ,
ହରି ଘେନ ନାହିଁ ସତେ,
ସୁଖର ସଉଧଚଢ଼ା ଆଶାର ନିଶ୍ରେଣୀ ।



## • ଝ •

### ଅନୁଝନ୍ତା

ଝାଳ ଦେଇ ଶ୍ୟାମ ଝାଳୁତ ମିନତ ଲଳିତା କହଇ ବାଣୀ
ଝାଙ୍କର ଖାଇବା ଝଗ୍ଡର ଏଥର ପାର କରିପାରିଲଣି ।
ଝୀକା ଲେଖାଉଛ କଳଙ୍କିନୀ ବୋଲି ଶିରେ ଝନୋଦମୀ ଗାଇ,
ଝମଝ ବାଜିବ ଝରଜ ବଜାରେ ତୁମ ଗୁଣଗଣ ଗାଇ ।

### —ଗୀତ—

ଝାଣ ପଣ କର ସାର,
ଝିକାଏ ମଦନ ଝଦନକୁ ସହ୍ନ ସଦନକୁ ଝଜେକର ।୦।

ଝଙ୍କାର କି ଶ୍ରବଣରକ ବାସବ କୋଦଣ୍ଡରୁ ଚଣ୍ଡଧନୁ,
ଝାଣି ଝଛେ ଶମ୍ଭ ସଦୃଶ କଲମ୍ଭ ତୁମ୍ଭଙ୍କୁ ଏକା ଅତନୁ ? । ୧ ।

ଝେକ ଏ ସୁନ୍ଦର ଶ୍ରୀମୁଖଟି ପରଧରବୁଡ଼ା ଫରମାସ,
ଝିକାଏ ହେଲେ ଯେ ହୃଦପୂ ସରୋଜେ ନୋହିଲ ହାସ ବିଳାସ । ୨ ।

ଝେକାଝେକ ମୋତେ କର ନାନାମତେ ତୁମ୍ଭ କାମନା ପୂରିବ,
ଝାଣ ଖୁଣ୍ଟା ଗୁରୁଜନ ଗଞ୍ଜଣାରୁ ମୋ ପ୍ରାଣସଖୀ ସରିବ । ୩ ।

ଝପା ଥିବା ଗୃହ ବଚନୁ ଗୋଚର ଯେତେ ସମାଚାର ଗୋପେ,
ଝିପିଦେଲେ କଂସ ଆଗେ କେ ନୃଶଂସ ନନ୍ଦ ବନ୍ଦୀ ହେବେ ଝୋପୋ ।୪।

ଝାକଛ ସୁଧାଂଶୁକଳାକୁ ଆକାଶୁଁ କରିବାକୁ ପାଣିଗତ,
ଝୀକାପୂତ ଅଷ୍ଟଦୁର୍ଗର କହଇ ଶ୍ୟାମ ଏ କି ଆଚରିତ ? । ୫ ।

( ରାଗ—ତୋଡ଼ି ; ତାଳ-ରୂପକ)

## ଗୀତକଥା —

ଲଳିତା କହିଲେ :—

ଶ୍ୟାମ, ଆପଣା ଠାଣପଣକୁ ଏମିତ ସାର ଦିଅନାହିଁ ।
କନ୍ଦର୍ପର କଷଣକୁ ଟିକଏ ସମ୍ଭାଳି ଘରକୁ ଗୃଲଯା' ।

୧—ଆଚ୍ଛା ! କହିଲ, କାନ ପର୍ଯ୍ୟନ୍ତ ଟାଣିକରି କନ୍ଦର୍ପ ତା'ର ପ୍ରପଞ୍ଚ ଧନୁରୁ ବଳୁ ଭଲିଆ ଶର ଖୁବ୍ ଯୋର୍‌ରେ କ'ଣ ତମକୁ ଏକା ବିନ୍ଧୁଚି ?

୨—ଏତେ ସୁନ୍ଦର ମୁହଁଟି ତମର ! ତାକୁ ଠେକ କେମିତି ଭଲି ତମେ ପରଘରବୁଡ଼ା କଥା ଫରମାଯ କରୁଛ ? ମନ ତମର ଟିକଏ ହେଲେ ଦବ ଯାଉନାହିଁ ?

୩—ତୁମେ ଏଣେ ମତେ ଠେକାଠେକ କରି ତମ ମନ-କାମନା ପୂରାଇବ, ତେଣେ ସଖୀ ମୋର, ତା ଶାଶୁ ନଣନ୍ଦ ଗଞ୍ଜଣାରେ ସରିବ ! ବାଃ, ବେଶ୍ ବିଗୃର ତ !

୪—ଜାଣିଛ ନାଁ ? ଗୋପର ଯେତେକ କଥା ସବୁ କଂସ କାନକୁ ଯାଉଚି ; ଦୂତମାନେ କଂସକୁ ଗୋଚର କରିଯାଉଛନ୍ତି । କେହି ଖରଆ ଯଦି ଏକଥା କଂସ କାନରେ ପକାଏ, ତେବେ ତମ ବାପା ନନ୍ଦରାଜା କଂସ ବନ୍ଦୀଶାଳାରେ ପଡ଼ିବେ ।

୫—ଆଠଗଡ଼ର ଗମ୍ଭ ଘିସା ଆନ୍ତି କହୁଚନ୍ତି:—କୃଷ୍ଣଚନ୍ଦ୍ର, ଆକାଶ-ଗ୍ଧନ୍ଦ ଧରିବାକୁ ତମେ ଆଶା କରୁଚ—ଏ ତମର କିଭଲିଆ ଆଚରଣ କହିଲ ।

---

### ଶ୍ଳୋକାଂଶ

**ଯାବନ୍ତ୍ରୋ ବଳଯନ୍ତ୍ର ଯୌବତମନଷ୍ଫୋରାଃ କଣୋରାଃ ପୁରେ**
**ପକ୍ଷନ୍ତ୍ରେଷୁ ସମୂଲ୍ଲସ୍ତ୍ରଜନ୍ ରଥପଥଃ ପ୍ରକ୍ଷେଦ୍ଧନାନ୍ କୌସ୍ତୁମାନ,**

ବାହ୍ୱାବାହ୍ୱବପୂର୍ବକଂ ତ୍ୟଜତ କିଂ ବ୍ରଯେୟବ ଯୁଜ୍ୟାଣସ୍ତେ
ହ୍ୱା ହ୍ୱା ଶମ୍ବଳଦମ୍ବଡମ୍ବରଭର ଲମ୍ବାନ୍ ବଲମ୍ବାନ୍ ମୁହୁଃ
କେନ ବାଯ କିଶୋରେଣ ବଲ୍ଲବନଗର୍ଯ୍ୟା ମଠକୁଟ୍ଟିମ ବନ୍ୟସ୍ତ-
କାର୍ତ୍ତସ୍ୱରକୃତିମପୁତ୍ରିକାଃ କୃତନା କଥ ନାବଲୋକ୍ୟନ୍ତେ ।

## ଅର୍ଥ :—

ଲଳିତା—ଭଲ ତ କହିଲ କାହ୍ନୁ,
ସୁବର୍ଣ୍ଣ ମାନସଗୃହର
ରସିକ ନାଗର,
ଗୋପ ପୁରେ ଅଛନ୍ତି ଯେତେକ;
କୁସୁମର ଶର
ତାଙ୍କୁ ବିନ୍ଧଇ କନ୍ଦର୍ପ ।
ଆଉ, ଠଉରାଇ ତୁମ୍ଭଙ୍କୁ ମୋହନ !
ସରଳମତି, ସେ
ରତି ବାହୁଯୁଦ୍ଧ
ବଜ୍ରଶରେ କରଇ ଜର୍ଜର ?
କହିଲ ମୋହନ !
ଗୋପେ ଯେତେ ଚତୁର କିଶୋର
ନୟନେ ସେ ଦେଖି କି ନାହାନ୍ତି କେବେ
ପ୍ରାସାଦ ଉପରେ କେତେ ସୁନାର ପିତ୍ତୁଳୀ ?
ଶୁଣି ଏତେ, —

## 'ଠ'

### ଅନୁଚନ୍ତା

—ଠଣା ମାର ଲାଜ, ମଣ୍ଡଳ ମଥାରେ ଚଢ଼ିଲେ ମୁରଳୀଧର :—
ଠୂଳେ ହେଲେ ଥରେ ସିଞ୍ଚିଲୁ ନାହିଁ ତ କରୁ ତୋ ଅମୀୟଧାର ।
ଠଉର କର ମୁଁ ବାଉଳି ଲଳତେ, ରୁନ୍ଧୁ ଏକା ମୋର ଗଡ଼,
ଠଣା ତୋ ପଦକ ନ ଜାଣି ପଦକ ମଣିବ ଯେ ଗଜଗଢ଼ ।

## — ଗୀତ —

ଠିକ-ଠ ବର୍ତ୍ତୁଳ ଚନ୍ଦ୍ରାନନା, ତୋ ଚରଣରେ ପଦ ।
ଠକପଣ ନ ଆଚର
ମୋ କଦନକୁ ବିଗୂର
ଅକପଟ ହାଣବନ୍ଧ ଉଚିତ ରେ । ୧ ।

ଠଣା ଠୁଙ୍କି ତାପ ହାସ,—
ମୁ ଦେ ମନମଥ ପାଶ—
ବନ୍ଧନ କର ତୁ ପଣ୍ଡ ମୋଚିତ ରେ । ୨ ।

ଠଉରାଇ ଅବସର,
କଲେ ତୁ ପ୍ରସଙ୍ଗ ମୋର
ଯିବ ରାଜୀବନେହାକୁ ରୁଚିତ ରେ । ୩ ।

ଠୋ କର ଛୁଣ୍ଡାଇ ଦେ'ନା,—
ପ୍ରିୟସଖି, ମୋ ବେଦନା,
ନ ଲାଗଇ ହାକ ତତେ ହେଲେ କଞ୍ଚିତ ରେ । ୪ ।

ଠାରି ଦେଲେ ନେହାଞ୍ଚଳେ,
ହଜନ ସ୍ଥଳେ ସେ ବଳେ,
ହରାଜବ କ୍ଷଣେରୁଚି ଉଚିତ ରେ । ୫ ।

ଠାକୁର ଠାକୁରାଣୀଙ୍କ
ପଦାମ୍ବୁଜ-ଧ୍ୟାନରଙ୍କ,
ନୃପ ଜଗଦ୍ଦେବ କରେ ରଚିତ ରେ । ୬ ।
( ରାଗ — ତୋଡ଼ି, ତାଳ ଆଠତାଳି )

## — ଗୀତକଥା —

୧—ଶ୍ରୀକୃଷ୍ଣ କହୁଚନ୍ତି—ଗୃହମୁହିଁ, ତୋ ମୁଖ ଠ ଅକ୍ଷର ଭଳି ଗୋଲାକାର, ଚନ୍ଦ୍ରରୁ ଠକପଣିଆ ଗ୍ରୁଡ଼, ମୋ ଦୁଃଖ ବଗୁର କର,—ମୁଁ କପରି ଏ କଷ୍ଟରୁ ରକ୍ଷା ପାଇବ । ଅକପଟ ହୃଦୟରେ ତାହାର ବାଟ କରିବା ଉଚିତ ।

୨—ସଖି ! ମଦନ ମତେ ଯେଉଁ ଭୟ ଦେଖାଉଛି, ତା' ମୁଣ୍ଡରେ ଠଣାମାର ତୁ ମୋତେ ତା'ର ପାଶ ବନ୍ଧନରୁ ମୁକ୍ତକର ।

୩—ସହି, ବେଳ ଦେଖି ତୁ ମୋ କଥା ପକାଇଲେ ପଦ୍ମନୟନା କଶୋରୀକ ନିଶ୍ଚୟ ତାହା ରୁଚିଯିବ ।

୪—ସଖି, ଆମ ଦୁହିଁଙ୍କ ସମ୍ପର୍କ ପ୍ରସଙ୍ଗକୁ ତୁ ଠୋ କରି ଛୁଡ଼ାଇ ଦେ'ନା । ମୋ ଦୁଃଖ କଅଣ ତୋତେ ଟିକଏ ହେଲେ ବାଧୁ ନାହିଁ ?

୫—ତୁ ଝାଲ ଟିକଏ ଆଖି ଠାରିଦେଲେ, ଚଞ୍ଚଳାପରି ସୁନ୍ଦରୀ ବାଧ୍ୟ ହୋଇ ଏକୁଟିଆ ସ୍ଥାନରେ ପହଞ୍ଚିଯିବ । ଠାକୁର ଠାକୁରାଣୀ ଅର୍ଥାତ୍ ଶ୍ରୀକୃଷ୍ଣ ଓ ଶ୍ରୀମତୀଙ୍କର ଶ୍ରୀଚରଣ ଧ୍ୟାନରଙ୍କ ଆଠଗଡ଼ର ରାଜା ଏହା କହିଲେ ।

### ଶ୍ଳୋକାଂଶ

ଏଣୀଦୃଶଃ ପ୍ରିୟସଖୀ ପ୍ରିୟବାଦିନୀ ତେ—
ବ୍ୟାପଙ୍କନେନ ସଦୃଶୀଧ ବଶାରଦେହ ।
ବଶ୍ୟାପନାପନ୍ଦୁଦସ୍ୱଃମପାସ୍ୟ ଭୂଭ୍ୟମ୍
ଯତ୍ରୋଟତେ କୁରୁ ସୁରୂପବଙ୍ଗଡ ବଙ୍ଗ ।

ଦୁର୍ଗଡଜଦବଦୋପକାରଜନ୍ୟପୁଣ୍ୟଯଶୋଽପବର୍ଗ-
ନର୍ଗତାଳସନ୍ନହର୍ଗା ହ ଦସ୍ୱାଳବୋ ହୃଦସ୍ୱାଳବଃ ।



"ଓହକ ବକଳ ସାର, କଳାକାହ୍ନୁ ! କି କରି ହେବ ମୁଁ ସାହା ?"

— ଲଳିତା

**ଶ୍ରୀକୃଷ୍ଣ**—ସଳଜ୍ଜରେ !

ଆକୃତିରୁ ପ୍ରକୃତି ବିଚାର ।
ଏତେ କମନୀୟ ରୂପ ଧରିଛୁ ସୁନ୍ଦରୀ !
ପୁଣି, କୁରଙ୍ଗୀନୟନା ରାଧା
ସହଚରୀ ତୁହି,—
ସ୍ୱଭାବେ ମଧୁଭାଷିଣୀ ଚତୁରୀ ଲଳିତା,
ବିପତ୍ତି ଉତ୍ପତ୍ତି କାଳେ
ରଙ୍କର ତୁ ସଞ୍ଚିତ-ରତନ ।
ସହଜ କୃପାଳୁ ଜନେ
ନିଶ୍ଚିତରେ ପରଉପକାରୀ,—
ଦୁଃଖୀ ଦୁଃଖ ନପାରନ୍ତି ସହି ।
ତେଣୁ ଲୋ ସୁନ୍ଦରି,
ଅନୁସରି ରହିବି ମୁଁ ତୋରେ
ଯାହା ଇଚ୍ଛା ତୋର, କର ତାହା ।

---

'ଓଁ'

**ଅନୁଚିନ୍ତା**

**ଜହ୍ନକୁ ନୁଆଁ କର ବଢ଼ାଉଛ ଫୋଟକାଟି ପ୍ରଥଫଳ**
**ତାକୁ ମୁଁ କହୁଛି ବୋଇଲ ଲଳିତା, ହୃଦେ ମଧୁ, ମୁଖେ ଛଳ;**
**ତାଙ୍କର ମନ୍ଦିରେ ଜାଣୁ ଜାଣୁ ଆପେ ମେଲି ଦେଲ ଦ୍ୱାର ତାଆ**
**ଜହ୍ନକୁ ବିକଳ ସାର, କଳାକାହ୍ନୁ ! କି କରି ହେବି ମୁଁ ସାହା ?**

## — ଗୀତ —

ଡର ନାହିଁ କି ହେ ପର ତରୁଣୀ ହରଣୁ ?
ଡୋର ଲାଗି ଘେର ପଡ଼ିବ ଯେ ହେବ ଘୋର ପର ଆଚରଣୁ ।ପଦ।
ଡୋଳା ପ୍ରତିମାକୁ ପରାୟେ ତୁମ୍ଭଙ୍କୁ ଯଶୋଦା ଅଛନ୍ତି ପାଳି,
ଡୁବିବଟି ଧନ କେଳିକି ମୋହନ ଲୋଡ଼ୁଛ ଯେ କୁଳପାଳି । ୧ ।
ଡକା ଦେବା ବେଳେ ଅରିଷ୍ଟେ ଉତ୍ପନେ ଦେଖିଛୁଁ ଶକଟ ଦଶା,
ଡାକି ମଧୁମାକୁ, ଡାକି ଆଣିବାକୁ ଏଠାକୁ କାହା ଭରସା । ୨ ।
ଡବ ଡବ ବାରି ନିଃସରିବ ଗୁରି ପ୍ରହରେ ନୟନ ଯୁଗୁଁ,
ଡହ ଡ଼ହ ହେବ ମୃଦୁ ଅବୟବ ଶ୍ୟାମ ଶ୍ରୀଅଙ୍ଗଟି ଖେଦୁଁ । ୩ ।
ଡାକି ତ ଜାଣ ମୋହନ, ବଂଶୀରବେ ବହର ସୁଖେ ଏ ବନେ,
ଡ଼ୁଇଁ ହେବୁ ସିନା ଆମ୍ଭେ ଫଳ ବିନା ନ ପଡୁ ତା ଆମ୍ଭ କାନେ ।୪।
ଡାଳିମ୍ବମଞ୍ଜି-ମଞ୍ଜୁଳଦଶନା ସେ ଖେଳୁଥାଉ ତୁମ୍ଭ ତୁଲେ,
ଡେଉଁଥାଅ ବନଯାକ ତୁମ୍ଭ ମନ ଶ୍ରୀହରିଚନ୍ଦନ ବୋଲେ । ୫ ।

( ରାଗ – ଆଶାବରୀ । ତାଳ— ଆଠତାଳି )

## – ଗୀତକଥା

ଲଳିତା କହିଲେ – କାହ୍ନୁ , ପରନାରୀ ହରଣ କରିବାକୁ ମନରେ ଟିକିଏ ହେଲେ ଡରଭୟ ନାହିଁ ? ଜାଣିଚ ନା ? ଏଇଭଳି ଆଚରଣରୁ ତୁମେ ଦଉଡ଼ିରେ ବନ୍ଧା ହେବ ।

୧— ମା'ଆ ଯଶୋଦା ତାଙ୍କର ନୟନ-ପିତୁଳି-କରି କେତେ ସରାଗରେ ତମକୁ ପାଳିଛନ୍ତି, ତମେ ପୁଣି କୁଳନାରୀଙ୍କ ମହତ ଉଜାଡ଼ିବାକୁ ଲୋଡ଼ୁଛ ! ଯଶୋଦାଙ୍କର ଯେ ସ୍ନେହର ଧନ ବୁଡ଼ିଯିବ ସିନା !

୨ ଛୋଟୁଡ଼ିକାଳରୁ ତ ତମ କଥା ଭଲ ଜଣାଅଛି । ଶିଶୁ ହୋଇ ଶୋଇ ଡକାପାରିଲା ବେଳେ, ତମେ ଶକଟାସୁରକୁ ମାରିଛ

ପଗ ! ଏଇ ଆଖି ସେକଥା ଦେଖିଛୁ । ସେଥିରେ ପୁଣି କଟି-ମଧ୍ୟମା (ରାଧା) କୁ ଏଠିକି ଡାକ ଆଣିବାକୁ କାହାର ବଦ୍ୱପ ପାଇବ, କହ୍ୱଲ ?

୩—ତମ ସାଥିରେ ମିଳନ ଘଟିଲେ ଏଇ ସୁନ୍ଦର ଶ୍ୟାମ ଅଙ୍ଗ ସ୍ପର୍ଶରେ ତାଙ୍କର ସ୍ୱର କଷ୍ଟହେବ, କୋମଳ ଅଙ୍ଗ ଡହ ଡହ ଛାଡିବ । ସ୍ୱଚ୍ଛ ଗୃଢ଼ପଦ୍ୱର ଯାକ ବଗୃଘ ଯାତନାରେ କଲବଲ ହେବ, ଆଖିରୁ ଡବ ଡବ ହୋଇ ଲୁହ ଝରିବ ।

୪—କାହିଁକି ? ତମକୁ ତ ବଂଶୀ ସ୍ୱନରେ ଡାକ ଆସେ । ତମେ ତାଙ୍କୁ ଡାକ ଆଣୁନାହିଁ ? ମୋ ଦେହ ସେ ସୀମ ହେବନ ହିଁ । ତା' ଛଡ଼ା ମୁଁ ଦେଖୁଛୁ, ବଂଶୀ ବଜାଇଲେ ବ କଛୁ ଫଳ ହେବ ନାହିଁ । ସେ ସ୍ୱର ଆମ କାନରେ ନ ପଡୁ, କ ଆମେ ଡହକବକଳ ନ ହେଉଁ ।

୫—ଆଉ ଯଦ ବା କଛୁ ଫଳେ, ତେବେ ସେ ଡାଳିମ୍ବଦନ୍ତୀ ଏଠିକି ଆସି ତମ ସଙ୍ଗେ ଖେଳୁଥାଉ, ତମେ ମନ ଇଚ୍ଛା ଏ ବଣରେ ଉଆଁ ମାରୁଥାଅ ।

ଶ୍ରୀ ହରିଚନ୍ଦନ ଏଇକଥା କହୁଥିଲେ ।

## ଶ୍ଳୋକାଂଶ

କଂସଃ ସ୍ୱଂସାଂ ନୃଶଂସାନାଂ ବଭଂସଃ ଶାନ୍ତି ଭାଗ୍ୟଶୀମ୍,
ଦୃଷ୍ଟଯେ ଧନନଃ ସ୍ୱନୋ କଥଂ ଯାସ୍ୟଧ୍ୱନ୍ନନଭାମ୍

ଅବର୍ଣ୍ଣାର୍ଣ୍ଣବୋଦ୍‌ଗୀର୍ଣ୍ଣକଲ୍ଲୋଳମାଳାନ୍ଦୋଳତସ୍ତ୍ରମପି କଂ ପୁନସ୍ତରୁଣି ଭରଣିକୃମୁଷକରଣୀପ୍ରମିଖୁପଦଶ୍ୟ ମାମପି ଭୁଜ କୂଳଦବସ୍ଥାଂ ବଧାସ୍ୱ ମକ୍ସସ୍ତିରୁଂ ବସ୍ତୁରମାରଭସେ ।

**ଅର୍ଥ :—**

ଲଳିତା – ଜାଣିଛ ତ ନଟବର !
ନିଷ୍ଠୁର ନୃଶଂସ କଂସ ରାଜା ।
ଧନବନ୍ତ ଘର ପୁଅ ତୁମ୍ଭେ
ଅବାଟେ କାହିଁକି ଭଲ
ଯାଇ ମନକର ?
ସହଜେ ତ ଭାସୁଛ ଆପଣେ
ଅପବାଦ ସାଗର ତରଙ୍ଗେ,
ମେ ତେ ପୁଣି—
ନଉକା ତୁ ହୁଅ ବେ ଳ
ଦେଇ ଉପଦେଶ,
କୂଳରୁ ଦୂରକୁ ଠେଲ;
ବଗ୍ଧର କାହିଁକି ବାନ୍ଧ
ସେହି ଅପବାଦ ମାରେ
ବୁଡ଼ାଇବ ବୋଲି ?
ଶୁଣି ଏତେ ଲଳିତା ମୁଖରୁ
କହିଲେ ଶ୍ରୀକୃଷ୍ଣ :—

---

---ଅନୁଚନ୍ତ୍ରା---

ତମାଳ ମଣିଲୁ ଏବେ ହେଲେ ମୋର ମିନତିକୁ ସ୍ପନ୍ଦମୂର୍ତ୍ତି !
ତୋଳ ଗିଳିବାକୁ ଚଳେ ଜଳ ନାହିଁ କହୁଛୁ ତୋ ତନୁ ଛୁଇଁ ।
ତାଳ ଶିର କାହ୍ନୁ ବୋଇଲୋ ଲଳିତା ଏତେ ଉପକାର କର
ତୋଳ ବାଜାଯାଉ କଣେ:ଶ୍ଚ ପସ୍ତର-କୋଷ୍ଟର ପଣେରେ ମୋର ॥

## • ଢ •

### — ଗୀତ —

ଢାଳେ ତ ଢାଳଲୁ ନାହିଁ କୃପାସୁଧା ଝରକ ରେ । ପଦ ।
ଢକା ବାଜୁଥାଇ ବ୍ରଜେ    ଲଳିତାର ହୃଦାମ୍ବୁଜେ,
କରୁଣା ଅଛୁ ବୋଲି ଯା ନେଲୁ କେ ତା ହରକ ରେ । ୧ ।
ଢୋଳାଇଲୁ ପରି ଢଳ    ଢଳେ ପଡ଼ିପିବା ଭଳି,
ହେଲାନ ଯେ କୁନ୍ଦକଳିଦଶନା ଏ ସରକ ରେ । ୨ ।
ଢ଼ୁକାଇ ଦେଲେ ତଡ଼ିତ    ଚକୋର ଚଞ୍ଚୁରେ ଶୀତ-
ଭାନୁ ଚନ୍ଦ୍ରିକାକୁ ବଉ ଯାଏ କଛୁ ସରକ ରେ । ୩ ।
ଢୋକୁ ଟିକୁ ପିନା ହଟି,    ମୋ ସାର ଯାଉଚ ଭୁଟି
ପିଇ ବଅନ୍ତ୍ରକ ଚୋଟିଯାକ ସେ କଷୋଗକ ରେ । ୪ ।
ଢବାଢନାବରୁ ଗୋପ-    ନଗରର ବନ୍ଦେ ଭୂପ
ବାଲୁକେଶ ଦେବ ମାପ-କୁଞ୍ଜ ପୁଞ୍ଜ ସରକ ରେ । ୫ ।
( ରାଗ—ଦେଶାକ୍ଷ, ତାଳ —ଏକତାଳି )

### — ଗୀତକଥା —

ଲଳିତେ, ଏତେ ନେହୁଗ ହୋଇ କହିଲି, ତେବେବେ ଟିକଏ ହେଲେ ତୋର ଦୟା ହେଲା ନାହିଁ, ( ତୁ କରୁଣା ଅମୃତ ବାରି ଢାଳିଲୁ ନାହିଁ ? )

୨—ଲଳିତା ହୃଦୟରେ ଦୟା ଅଛି ବୋଲି ଗୋପପୁରଟା ସାରା ଢୋଲ ବାଜୁଛି, ଏବେ କିଏ ତାକୁ ହରଣ କରି ନେଲା କି ସଖି ?

୨—ରେ କୁନ୍ଦଦନ୍ତି ! ଝୁମାଇ ଢଳି କରି ଢଳେ ପଡ଼ିପିବା ଭଳି ମୋ ଅବସ୍ଥା ହେଲାଣି, ଅହା ।

୩—ଶୋଷିଲ୍ ଗୃତକ ମୁହଁରେ, କଣାଏ ଚନ୍ଦ୍ର କିରଣ ପିଆଇ ଦେଲେ କଅଣ ସମ୍ପତ୍ତି ସରଯାଏ ?

୪—ମୁଁ କଅଣ ପତଙ୍ଗ ଗୋଟିକ ଯାକ ସେ କାଂଶାଗ୍ନିକ ପିଇ ଦଅନ୍ତ କି ? ଢୋକଟାକ ଆଁଟାରେ ମୋ ବଳ ହଟିଯାଉଛି ସିନା !

୫ ଯେଉଁ କୋଠାଘରର ଝରକା ଭିତରେ ଶ୍ରୀକୃଷ୍ଣ ରାଧାଙ୍କୁ ଦେଖିଥିଲେ ସେହିଠାରୁ କଦମ୍ବକୁଞ୍ଜ ପର୍ଯ୍ୟନ୍ତ ସମସ୍ତ ପଥକୁ ବାଲ୍‌କେଶ ଦେବ ବନ୍ଦନା କରୁଛି ।

## ଶ୍ଳୋକାଂଶ

ସ୍ୱସ୍ୱଂ ସ୍ୱସ୍ୱଂ ମସ୍ତୋଚ୍ଚୈଃ କଥିତମକପଟଂ ଗୃହ୍ନମାକର୍ଣ୍ଣ୍ୟ ଭୂସ୍ୱଃ,
ପାସ୍ୱଂ ପାସ୍ୱଂ ଚ ଦୃଷ୍ଟ୍ୟା ମମତନୁମତନୁ ହୃର ନାସଚଭିନ୍ନାମ୍ ;
ସାନୁସ୍ନେହୋଣେନ ସାନୁଗ୍ରହମହହ ମମ ପ୍ରାଣବଶ୍ୟାଣନୋହ୍ମା—
ମିଚ୍ଛାଂ ତୁଚ୍ଛାଂ ବଧାସ୍ୱ କ୍ଷିପସି ସୁମୁଖି କଂ ଶେଷରୁଷଂ କଟାକ୍ଷମ୍ ।

ମୀନାଙ୍କଙ୍କପଞ୍ଚଦୂନାମ୍ନଃ କଥମାତ୍ତିସ୍ୟ ବପସ୍ତେ କାନ୍ତିସ୍ୱର-
ଗୌରଗୀଭିରକାରୁଣିକହୃଦସ୍ୱବୃତ୍ତିହ୍ୱମୁଗ୍ଧାଧ୍ୟୁତ ଇତ ବ୍ରୁବତ
କଣୋରଶିରେମଣୌ ସସ୍ତିତହୃରଂ ଲଳିତା ।

**ଅର୍ଥ :—**

ଶ୍ରୀକୃଷ୍ଣ—ପ୍ରିୟସଖୀ,
ଧୀନ ମୁହିଁ ଅଛ !
ତେଣୁ ମନ ଖୋଲି,
ଦୁଃଖ ମୋର କରଛି ବଖାନ ।
ଗୃଷ୍ଟ ଶୁଣି ମୋର,
ପୁଣି

ସ୍ୱଚକ୍ଷୁରେ ନିରେଖି ମୋ ତନୁ ;—
କନ୍ଦର୍ପ କରଇ ଯା'ରେ ଶରେ ଖଣ୍ଡ ଖଣ୍ଡ,—
ନାଶକରୁ ଅବହେଳେ—
ଜୀବନର ଉତ୍କଣ୍ଠା ମୋହର
ହୋଇ ତୁ କୋପୀମି ?
କାହିଁକି ରେ ହେମଗୋର !
କାମ-ବାଣ ସନ୍ତାପିତ ଆରତ ରକ୍ଷଣେ
ତୋସର ସୁନ୍ଦରୀ ସତେ
ଏଡ଼କ ନିର୍ଦ୍ଦୟ ?
ବାଣୀ ଶୁଣି,
ଦର ହସି ଭଣିଲେ ଲଳିତା ;—

---

'ଶ୍ରୀ'

ଅନୁଚନ୍ତା

**ଅବୁଝା ପଣେରେ ସଣଛ ତ ଶ୍ୟାମ, କେତେ ବୁଝାଇବ ଆଉ ?**
**ଅକାରଣେ ତୁମ ମନ ରଖିବାକୁ ଯିବ, ଯାହା ପଛେ ହେଉ ।**
**ଅକଲ ନଥିବା ଜନପରି ପିନା ତା ଆଗେ ବାଢ଼ିବ କଥା**
**ଅକଡ଼ ମଣିଲେ କଣେଶାସ୍ତି ତ ଭଲେ କଟିବ ଲଳିତା ମଥା ।**

— ଗୀତ —

ଅତସୀ କୁସମସମ ଶ୍ୟାମ ହେ ମୁଁ ଗଲିଟି । ପଦ ।
ଅଳି ଭ୍ରମର ନିବଡ଼ ଅସହ୍ୟ କଷ୍ଟ ସେ ଯେ ବଡ଼
ଅବଶ୍ୟ ତା ଗ୍ରମୁରେ ମୁଁ ନିବେଦନ କଲିଟି । ୧ ।

ଅଧ ଅଧରରେ ସ୍ମିତ ଉଲ୍ଲାସି ହେଲେ ଲକ୍ଷିତ
ଉତ୍ସବ ଏହ୍ବ ଟି ବୋଲ କୃପାକଳ୍ପ-ବଲ୍ଲୀଟି । ୨ ।
ଆରକତ କଲେ ମୁଖ ଅଖଣ୍ଡ ସୁଧା ମୟୁଖ,
ଆବୃଦ୍ଧ ସରବ ମୋର ଖାଇଲେ ହେଁ ମଲ୍ଲୀଟି । ୩ ।
ଅଦୃଷ୍ଟଙ୍କୁ କଟାକ୍ଷ ଅଙ୍ଗୀକାର କଲେ ସର
ଅବାଟେ ଉଚ୍ଛନ୍ନ ହେବ ଏ ବଲ୍ଲବ ପଲ୍ଲୀଟି । ୪ ।
ଉଗ୍ର ନିର୍ଦ୍ଦେଶ ନ ପର ଉପବନ ଗୋପପୁର
ଆଶ୍ରୟ ନୋହିବ ଗୋବର୍ଦ୍ଧନ ଗିରିଦରୀଟି । ୫ ।
ଅଷ୍ଟଦୁର୍ଗନାଥ ଭଣେ ଆହା, ଧ୍ୟାନେ କି ଶୋଭା ସେ
ଅଖିଳଜନନୀ ନାସା ମୃଗମଦକଲିଟି । ୬ ।

( ରାଗ—ସୋମ, ତାଳ - ଏକତାଳି )

## — ଗୀତକଥା —

ଅତସୀ ଫୁଲ ବର୍ଣ୍ଣ ହେ ଶ୍ୟାମସୁନ୍ଦର, ମୁଁ ଏବେ ଯାଉଛୁ ।

୧ ଏଣେ ଭ୍ରମର ଚାଣୁଆଁ ଅଳି, ତେଣେ ଶ୍ରୀମତୀ ତ ମହାଅସହଣୀ । ଦୁଇ କୂଳ ଜଗିବାରେ ବଡ଼ ହରବର ହେବା କଥା । ହେଉପଛେ, ମୁଁ ତମ କଥା ମୁକର ତା (ଶ୍ରୀମତୀ) ଆଗେ ବାଢ଼ିବି, ତେଣିକି ଦେଖାଯିବ ।

୨ - ଯେବେ ତମ କଥା ଶୁଣି ତା ତଳିଓଠରେ ହେଲେ ଟିକିଏ ଲାଜୁଆ ହସ ଫୁଟିବ, ଜାଣିବ ତେବେ କଳ୍ପଲତାର ଅନୁଗ୍ରହ ହେଲା ।

୩ - ଆଉ ଯେବେ ତା ଚନ୍ଦ୍ରମୁହଁଟି ରଙ୍ଗ ପଡ଼ିଯିବ ମୋ ମହତ ତେବେ ଦ'କଡ଼ାର ହୋଇଯିବ । ଏଭଳି ଅବସ୍ଥା ହେଲେ ମୁଁ ଖାଇ ଥାଉଥାଉ ମଲି ବୋଲି ଜାଣ ।

୪—ଭାଗ୍ୟକୁ ଯେବେ କଣୋଷ୍ଣ ମୋ କଥାରେ 'ହିଁ' ଭରି ଦେଲା, ତେବେ ତ ଭଲ । ନୋହିଲେ ଏ ଗୋପପୁର ଉଚ୍ଛନ୍ନ ହୋଇଯିବ ସିନା !

୫—ରଜା (କଂସ)ର ତ ନିହାତି କଠୋର ଆଜ୍ଞା, ଏ କଥା ଯେବେ ତା କାନକୁ ଯିବ, ଏ ଗୋପପୁର କି ଗୋବର୍ଦ୍ଧନ ପର୍ବତ, କୋଉଠି ହେଲେ ଆଉ ଠାବ ମିଳିବ ନାହିଁ ।

୬—ଆଠଗଡ଼ ରାଜା କହିଲେ—ଜଗତମାତାଙ୍କ ନାସାର କସ୍ତୁରୀ କଲ ଧ୍ୟାନ ଦୃଷ୍ଟିରେ କେଡ଼େ ସୁନ୍ଦର ଦିଶେ !

### ଶ୍ଳୋକାଂଶ

ଯାମି ପ୍ରତାପମନୁକୂଲୟିତୁଂ ପ୍ରଯତ୍ନୈ—
ଶ୍ବେତଃ ସବୈରୁଦ୍ଧସନ୍ଧୋଦରଲୋଚନାଭ୍ୟାଃ,
ସାମି ପ୍ରସନ୍ନମପିଚେଦଭବଂ କୃତାର୍ଥା,
ନୋ ଚେତ୍ତ୍ୱଦାସ୍ୟବଧୂର୍ବୀକ୍ଷଣମେତଦେବ ।

ନନ୍ଦନନ୍ଦନ କହ୍ନିଚଲ୍ଲାଘବଲାକସ୍ୟାପ୍ୟୁସ୍ଥିତୌ ତମନୁଭୂୟ ଭୂୟସ୍ତତ୍ପ୍ରାନ୍ତଖସୁନ୍ଦରେନ୍ଦ୍ରୁଦର୍ଶନେ ବନ୍ଦଲିତା ନନ୍ଦହନ୍ଦୋହାନ୍ ଭବମନ୍ଦାଦରସ୍ୟା ବାମସ୍ୟା ଖ୍ରବ୍ୟମିତ୍ର ନବେଦ୍ୟ ନିଷ୍କ୍ରମ୍ୟ ସବଧଂ ଶ୍ରୀରାଧାୟାଃ ପ୍ରବଣଂ ତାଂ ପ୍ରତ ।

**ଅର୍ଥ :—**

ଲଳିତା—ବ୍ରଜ ଯୁବରାଜ,
ଯାଉଛି ମୁଁ, ରଖି ତୁମ୍ଭ କଥା ।
ପ୍ରାଣପଣେ କରିବି ଯତନ—
ବନ୍ଧୁମତେ,

କୃତାର୍ଥ ହେବ ମୁଁ କାହ୍ନୁ,
ଲଭେ ହେଲେ ହେବ ଯେବେ କଟାକ୍ଷ ପ୍ରସନ୍ନା ।
ଅନୁରାଗ ତୁମ୍ଭ ପ୍ରତି ରଖିବ ଯଦ୍ୟପି
କମଳନୟନା ରାଧା,
ନବଗୃର ମନେ ତାର ଆନ ।
ନାହିଁ, ଯେବେ ହେଲ ମୁଁ ନିରାଶ,
ଜାଣିରଖ କାହ୍ନୁ !
ଆଜଠାରୁ ମୋର
ଇଚ୍ଛା ହେଲା ହେରିବାର
ଚନ୍ଦ୍ରମୁଖ ତବ ।
ଶ୍ୟାମ ନଟବର !
ହେଲେ ହେଉ
ହେଟ ମଥା ମୋର ;
ଆଦରେ ବରବ ତାହା
ତୁମ୍ଭର ମନବାସନା ସିଦ୍ଧ ହେବାଲାଗି ।
ନତୁ ହେ ଗୋବିନ୍ଦ !
ତୁଟିବ ଉତ୍ସାହ ମୋର
ଫଟିବ ଭରସା ।
କି ସୁଖରେ ଆଉ ସତେ
ନିରେଖିବ ଶ୍ୟାମ ମୁଖଶଶୀ ?

---

## 'ତ'

### ଅନୁଚିନ୍ତା

ତୁରନ୍ତରେ ଯେବେ ଗନ୍ଧବା ଦରବ ଲେଡ଼ା ମାତରକେ ପାଇ,
ତରୁଣ ପଲ୍ଲବ ପରଏ ସେ ରଙ୍ଗ ଦ'ଦନକୁ ସିନା ଥାଇ ।
ତରକଣା ତେଣୁ କରସାର ଆଗେ ମୋହନ ମନ-ଗହ୍ୱଡ଼ା
ତଲ୍ଲିବାପାଇଁ କଶୋସ୍ଥି ମାନସ ଲଳିତା ହୋଇଲା ଛୁଡ଼ା ।

### — ଗୀତ —

ତୋ ଯେନ ତମାଲ ଶ୍ୟାମ ମୋ ମରଜ କଷିଲ୍ ରେ
ତଥାପି ତ ତଳେ ହେଲେ ତୋ ସ୍ନେହେ ନ ରସିଲ୍ ରେ । ପଦ ।
ତଳେ ବସନ୍ତ ପ୍ରସାର, ତୃଣ ଦଶନାନ୍ତେ ଧର,
କହିଲେ ହେଁ ଅନୁସର, ରାଜ ତ ନ ଦଶିଲ୍ ରେ । ୧ ।
ତହୁଁ କ ବଷମଭାବ ତର୍କିଲ୍ ମୋ ଗୃଢ଼ଶ୍ରବ—
ତଠକୁ ଘଠନ୍ତେ ଅବଧାନ ବନା ହସିଲ୍ ରେ । ୨ ।
ତପନଜାତଠକୁ ତୁ, ତରୁଣୀଠା କେଉଁ କୁତୂ—
ହଳରୁ ଆସିଲୁ ହେତୁ, କହ ବୋଲ ଘୋଷିଲ୍ ରେ । ୩ ।
ତାର ତୋର ସୁଲୋଚନା ତାରତମ୍ୟ ବବେଚନା
ଲବ ହୋଇ ନାହିଁ ତହିଁ, ତୋ ଚତ୍ତ ତ ରସିଲ୍ ରେ । ୪ ॥
ତରସ୍କାର ପୂର୍ବ ଭାଷା, ତରଳାଇ ସୁଖ ଆଶା
ତୋଠିକ ଚୂମ୍ବିଲ୍ ତୃଷା, ତମିର ବଳାସିଲ୍ ରେ । ୫ ।
ତୁଚ୍ଛସ୍ନେହମନ ଜନ, ତୋ ସଙ୍ଗକୁ କ ଭାଜନ
ପ୍ରସନ୍ନ ହରଚନ୍ଦନ ଜଗଦ୍ଦେବ ଭାଷିଲ୍ ରେ । ୬ ।

( ରାଗ—କନଡ଼ା । ତାଳ—ଏକତାଳି )

---

## — ଗୀତକଥା —

ଲଳିତା କିଶୋରୀଙ୍କ ନିକଟରେ :—

ସଖୀରେ, ତୋ ଲାଗି ତମାଳ ପତ୍ରପରି ଶ୍ୟାମଳ (ବର୍ଣ୍ଣ) ଶ୍ୟାମ ମୋ ମତିଗତି କାଳି ନେଲା । ହେଲେ ମଧ୍ୟ ; ତୋ ପ୍ରତି ଟିକିଏ ହେଲେ ତା ମନ ଟଳିଲା ନାହିଁ ॥

୧—ଭୂଇଁରେ ଲୁଗା ପାରି, ଦାନ୍ତରେ ତୃଣ ଧରି କେତେ ଅନୁସରଣ କଲି, ତେବେକେ ସେ ରାଜି ହେଲାପରି ଜଣାଗଲା ନାହିଁ ।

୨—ମୋ ଗୁହ୍ୟକଥା ତା କାନରେ ପଡ଼ିବା ମାତ୍ରେ ସେ ତାକୁ କେମିତି ଓଲଟା ଅନୁମାନ କଲା । ମନ ତ ଦେଲା ନାହିଁ ଟିକିଏ ହେଲେ, ଆହୁରି କଥାଟାକୁ ମୋର କେମିତି ହସରେ ଉଡ଼ାଇ ଦେଲା ।

୩—ମୋତେ କହିଲା :—ଯୁବା ସ୍ତ୍ରୀଟାଏ ତୁ, କାହିଁକି, କେଉଁ କୌତୁକ କରିବାକୁ ଯମୁନା କୂଳକୁ ଆସିଲୁ, କହ ।

୪—ସତେ ଲୋ କିଶୋରି ! ଟିକିଏ ତୁ ବିଗୁରିଲୁ ନାହିଁ—ସେ କେତେ ବଡ଼,—ତୁ କେତେ ଶ୍ରେଷ୍ଠ ! କେମିତି ମ ସତେ ତା ଆଡ଼କୁ ମନ ଢାଳିଦେଲୁ ?

୫—ତା ଗାଳିମନ୍ଦ ଶୁଣି ମୋର ସବୁ ସୁଖ ଆଶା ଚୂନା ହୋଇଗଲା, ତଣ୍ଟି ଶୁଖିଗଲା । ଚଉଦିଗ ଅନ୍ଧାର ଦିଶିଗଲା ମୋତେ ?

୬—ହରିଚନ୍ଦନ ଜଗଦ୍ଦେବ ଆଶ୍ରିତ ଲୋକ । ସେ କହୁଛନ୍ତି—ଯାହା ମନରେ ଟୋପାଏ ହୋଇ ଶରଧା ନାହିଁ, ସେ କି କେବେ ତୋ ସାଙ୍ଗକୁ ଯୁଗତି ହୋଇପାରେ ?

## ଶ୍ଳୋକାଂଶ

ଗ୍ଲପ୍ସ୍ୟାଂ ତ୍ୱଦ୍‌ଭୁଜଦମ୍ଭହେମଲତୟୋରାଶ୍ରିତ୍ୟ ନତ୍ୟାଂ ସ୍ଥିତାଂ,
ପାସ୍ୟାନ୍ମମଧୁନାପି ତନ୍ୱ ଭବତୀ ଭଲ୍ଲାଧ୍ୱନାଲ୍ଲାଘବାତ୍,
ଆସ୍ୱାଦଃ ସଖି କେବଲଂ ଫଳମଭୂତ୍ ବାଧାପ୍ୟସାଧାରଣୀ,
ଚେତସ୍ୟାଶ୍ୱରଭୂଦ୍‌କଲ୍ପ ନ ପୁନସ୍ତ୍ୱଲ୍ଲାଲସୋଲ୍ଲାସନଂ ॥
ଦୃଷ୍ଟ୍ୱା କଦାଚଦ୍‌ଭବଦୀୟାଶ୍ରିଷ୍ଟପିଙ୍ଗୌ ସମୁଦ୍ଧାସ୍ୟାମପି
ବନ୍ଧ୍ୟା ତ୍ୱମୁକ୍ତପନ୍ତସ୍ୟତେ କଲ୍ୟାଣବଲ୍ୟାଃ ।

**ଅର୍ଥ :—**

**ଲଳିତା**—ଶ୍ରୀମତି ଗୋ !
ଗ୍ଲଇ ପଡ଼ି, ଏ ଲଳିତା
ଚିର ଅନୁଗତା ତୋର ।
ବାଧୁଛି ରେ ଧନି, ମୋତେ
ହେଲନ୍ତି ଗୌରବ ହାନି ।
ରକ୍ଷା କର ମୋତେ ସଖି !
ପରିଶ୍ରମ ମାତ୍ର ହେଲା ସାର !
ଲାଭ ହେଲା—
ଜୀବନରେ ନସହିଲା ଭଳି ଯେତେ କ୍ଲେଶ ।
ହେଉ ପଛେ-
ତାହା ମଧ୍ୟ ଆଦରେ ବରନ୍ତି ;
ଥାଆନ୍ତା କି ତଳେ ହେଲେ
ଆଶା ତୋର ପୂରିବା ଭରସା ।
ତେଣୁ ,
ବସୁଛି ସଜନି ରେ,

ଯେବେ ଅବା ଭାଗ୍ୟବଳେ
ପୂରେ ତୋର ମନର କାମନା,
ପରଣତ ନୁହେଁ ହିତକର ।

---

ଓ୍ୱ

— ଅନୂଚନ୍ଦ୍ରା —

**ଆଲ ପାଖ ଘଟେ ରକ୍ମଣୀ ପର୍ବଏ ସଜମାର ପଥସ୍ଥିଛି,**
**ଅରେ ଆଶା, ଅରେ ନିରାଶା ଦୋଳାରେ ଦୋଳ ଖେଳୁଥାଏ ରହି ।**
**ଅସ୍ତରେ ଖବର ନ ଦେଲା ଲଳତା ଅନୁନସ୍ତେ ଯହୁଁ ତା'ର**
**ଥନ ଥନ ମାର ନୟନେ ଭରଇ ପର୍ବରେ ଅରକୁ ଥର :—**

— **ଗୀତ** —

ଥାପିରେ କହ ତଥାପି, ରେ ପ୍ରିୟସଖି !
ଥିବ କ ଗୁଡ଼ବ ପ୍ରାଣ । ପଦ ।
ଥିଲାପର ସ୍ନେହ, ଲଗିଲା କ କହ,
ଅଛୁ ଟି ତୋତେ ମୋ ଗ୍ରଣ । ୧ ।
ଥକାଇ ଭୁ କହୁ- କହୁ ଧିତ ରହୁ,
ନାହିଁଟି ମୋହର ଜାଣ । ୨ ।
ଥୋକାଏ ମୋ ପ୍ରୀତି- ବଧିକ ସମ୍ମତ
କଲେ କ ମୋ ପରିତ୍ରାଣ । ୩ ।
ଥରେ ହେଲେ ଭକ, ହେବ ମୋତେ ନିକ
ବଞ୍ଚାଇବ ପଞ୍ଚବାଣ । ୪ ।
ଥୋଇ ହୃଦେ ଛଳ ନ କର ବକଳ
କହେ ଅଷ୍ଟଦୁର୍ଗରାଣ । ୫ ।

---

(ରାଗ — ହିଂଝୋଟି, ତାଳ — ଆଠତାଳ)

## — ଗୀତକଥା —

ଶ୍ରୀମତୀ କହିଲେ ଲଳିତାଙ୍କୁ—ସଖୀ ! ମୁଁ ବଞ୍ଚିବି କି ମରିବି ମୋତେ ଠିକ୍ କରି କହ ।

୧—ତୋତେ ମୋ ରାଣଟି, ମୋଠାରେ ତାଙ୍କର ସ୍ନେହ ଥିଲାପରି ତୁ ବାରିପାରିଲୁ କି ନାହିଁ ?

୨—ତୁ ଅଙ୍ଗେଇ ଅଙ୍ଗେଇ ହୋଇ କଥା କହୁଛୁ ଯେ, ମୁଁ ଆଉ ଧୈର୍ଯ୍ୟ ଧରିପାରୁନାହିଁ ।

୩—ତୁ ତାଙ୍କ ପାଖରେ ଆମ ମିଳନ ଲାଗି ଯେଉଁ ଉପାୟ ବାଢ଼ିଲୁ, ସେଥିରେ ସେ କଅଣ ଟିକଏ ରାଜି ହେଲେ ନାହିଁ ?

୪—ଥରେ ହେଲେ କେମିତି ତାଙ୍କ ପାଦରେ ଜୀବନଟାକୁ ବିକି ଦିଅନ୍ତି ! ତା ନ ହେଲେ କନ୍ଦର୍ପ ମୋତେ ଆଉ ବଞ୍ଚାଇବ କି ?

୫—ଅନ୍ତରରେ କପଟ ରଖି ମୋତେ ଆଉ କଲବଲ କରି-ପକା'ନା' । ଅଷ୍ଟଦୁର୍ଗ (ଆଠଗଡ଼) ରାଜା ଏକଥା କହିଲେ ।

### — ଶ୍ଳୋକାଂଶ —

ସ୍ୱ ତସ୍ମିନ୍ମୁଖଃ ଶିଖଣ୍ଡମୌଳିଙ୍କଦ କମୁବାକୃତଦ୍ୱାନ୍ ମଦଙ୍ଗସଙ୍ଗମ୍,
କଥସ୍ୱ ସଖି ଯଦା ଶୃଣୋଷ୍ୱ ମେନେ ବପୁର୍‌ରକ୍ଷାଂ ବସ୍ତୂକାନି ଧାରସ୍ୟାମି ॥

ସହଚରି ଲଳିତେ ! ଦନ୍ତସନ୍ତୁଷ୍ଟସମୁକ୍ତମୃଣମନ୍ତ୍ରେଣ ବଳମ୍ମନବଲମ୍ବ୍ୟ ବୃନ୍ଦ ସ୍ୱବଶ୍ରମ୍ଂ ଜୀବାମି ବା ଜଡଧନାନ୍ୟଥବା ତାପିଞ୍ଛଶାଖିଶାଖାସ୍ୱା-ମୁଦ୍‌ବନ୍ଧନମଙ୍ଗୀକରିଷ୍ୟାମି ।

**ଅର୍ଥ :—**

**ଶ୍ରୀମତୀ**—ସତ କହ ସଜନୀ ରେ,
ଶୀଖଣ୍ଡଚନ୍ଦନଆ ଶ୍ୟାମ
ଦେଖନଲେଣି ନବେଦନ ତୋର ?
ଭୁଜ୍ଞ ତ ନାହାନ୍ତି ମଣି
ଅଙ୍ଗ ସଙ୍ଗ ପରସଙ୍ଗ ମୋର ?
ରଖିବ ନା ତେଜିବ ପରାଣ ?
କପଟ ନରଖି ଚତ୍ତେ,
ଉତ୍ତର ନକରି, କହ ମୋତେ ।
ତମାଳ ଡାଳରେ
ଦେଖ ଗଳାରେ ମୋ ରଜ୍ଜୁ
ହାରିବ ପବଣ ?—
ଅବା ବଞ୍ଚି ମୁଁ ରହିବ ଆଶାଧରି ?

—o—

ହସିଲେ ଲଳିତା ତହୁଁ—

•ଦେ•

ଅନୁଚନ୍ତା

ଦରଶେ କଶୋଗ୍ରୀ ନୟନୁ ଝରଇ ଦରଦର ନୀର ଧାର
ଦରଦୀ ସଖୀ ତ ଲଳିତା କକର ଦମ୍ଭ ଧଇପାରେ ଛାର ?
ଦ'ପଦ ମାତର କହିଛୁ ଲଗାଇ ନାହିଁ ବୋଲି ଶ୍ୟାମପ୍ରୀତ
ଦୀପ ଲଣ୍ଠପର ହେଉମୂର୍ଚ୍ଛିଗ୍ଲ କହେ ଗୁଣ୍ଡ କୃଷ୍ଣ ନୀଢ ॥



"ଧାପ ଲଭାସର, ଦେବର ମୁଖ ଶୀର କହେ ଗୁଡ଼ କୂଟନୀତି"

— ଲଳିତା

## — ଗୀତ —

ଦୁଃଖିଧନ ! ଦୁଃଖମୟୁ ନକର ସରସ ମନ,
ଦମ୍ଭ ଦେଖିବାକୁ ସିନା କଲି ଛନ୍ନ । ପଦ ।

ଦୂରୁଁ ମୁଁ ଯିବାର ଜାଣି ହରି, ଦରିଦ୍ର ନିଧିଲଭିଲା ପରି,
ଦ୍ୱିଗୁଣ ଆଦରେ ପ୍ରମୋଦନଦରେ ମଜ୍ଜି ଯେନଗଲେ କର ଧରି ।୧।

ଦୟା ଜର ଜର କରି ଚିତ୍ତ, ଦନ୍ତବାସେ ରଖି ଦରସ୍ମିତ,
ଦଶବାର ଅନାମୟ ମୋତେ ଯେନାଯେନ କରି ପଚାରିଲେ ମିତ ।୨।

ଦେଖିଲି ଯାହା ଶ୍ରୀଅଙ୍ଗ ଦ୍ୟୁତି, ଦଳି ହୋଇଗଲା ମୋର ଗୁପ୍ତି,
ଦ୍ୱିତୀୟାର ଶଶିରେଖା ପ୍ରାୟ ହଣିଗଲେଣି ସେ ଇନ୍ଦ୍ର-ନୀଳହାସ୍ତି । ୩ ।

ଦୁର୍ବାର ତୋ ନେତ୍ରାଞ୍ଚଳ ଶର । ଦେବାରୁ ଦୁଃଖ ଦୁଃସହତର,
ହବାଲି ହେବାର ଦେହ ମଲ୍ଲାସାର ଜାଣି ଯା ହେଲା ମାନସ ମୋର ।୪।

ଦୁର୍ବଳ ସାଳସ ଦେଖି ଗୃଳି, ଦୁରୁହରେ କଞ୍ଚି ପଚାରିଲି,
ଧାର୍ଯ୍ୟତପତ ନାସାମୀଳ ତେଜନ୍ତେ ଆହା ମରଇ ତ ବଚାରିଲି । ୫ ।

ଦେବ ଦଇବ ତୋ ଅଭିମତ, ଦୂରକର ଦ୍ୱାପରକୁ ମିତ,
ଦବଷ୍ଟି ଏ କଷ୍ଟଯାକ ହେବ ଅଷ୍ଟଦୁର୍ଗନାଥର ଏ ବରଶତ । ୮ ।

(ରାଗ—କାମୋଦୀ । ତାଳ ଏକତାଳି ।)

## — ଗୀତକଥା —

ଲଳିତା କହୁଛନ୍ତି :—

ଦୁଃଖିଧନ, ତୋ ଠାଣ ପରଖିବାକୁ ସିନା ମୁଁ ଟିକିଏ ଉରାଇ ଦେଉଥିଲି, ସରସ ମନଟିକ ତୋ'ର ମାରିଦେ'ନା !

୧—ମୁଁ ଯାଉଛି ବୋଲି ଦୂରରୁ ବାରିପାରି ରଙ୍କ ନିଧି ପାଇଲାପରି ଆନନ୍ଦ ସାଗରରେ ବୁଡ଼ିଗଲେ ଶ୍ୟାମ, ଆଉ ଆଉ ଦିନଠୁଁ ମୋତେ ଦି'ଗୁଣ ଆଦରରେ ମୋ ହାତ ଧରି ନେଇଗଲେ ।

୨—ଜାଣିଲୁ ମିତ, ସ୍ନେହଭରା ହୃଦୟରେ, ହସ ହସ ମୁହଁରେ ମୋତେ ସେତିକ ଟେକାଟେକ କରି ଦଶଥର ତୋ କୁଶଳ ପ୍ରଶ୍ନ ପଚାରିଦେଲେ ।

୩—ମାଳଦ୍ରାକ୍ଷ ସତରେ ଏକା ଦ୍ୱିଷ୍ଟାଯ୍ୟାଜହ୍ନ ପରି କ୍ଷୀଣ ହୋଇ-ଗଲେଣି—ତାଙ୍କୁ ଦେଖିକରି ଚିତ୍ତ ମୋର ଦଳ ହୋଇଗଲା ।

୪—ତୋ କଟାକ୍ଷ ବାଣ ନିଷ୍ଠୁରରେ ତାଙ୍କୁ ବଡ଼ ଦୁଃଖ ଦେଇଛି, ତାଙ୍କ ଦେହ, ମନ, ବଳ ସବୁ ଦୁର୍ବଳ ହେବାପରି ଦେଖି, ଯାହା ସତେ ହେଲା ମୋ ମନ, କଅଣ ଆଉ ତୋତେ ସେକଥା କହିବ ?

୫—ତାଙ୍କ ଦୁର୍ବଳ ଦେହ, ଅଳସ ଚାଲି ଭଙ୍ଗି ଦେଖି ମୁଁ ଦୁଃଖରେ କିଛି ପଚାରିଲାବେଳକୁ ସେ ଗରମ ଖର ନିଃଶ୍ୱାସ ପକାଇଲେ । ଏତିକ ଦେଖି ମୋର ମନେ ହେଲା, ମରଣ ହେଲା ନାହିଁ କାହିଁକି ମୋତେ ଭଲା ?

୬—ସଖିରେ ! ଦଇବ ତୋ ମନବାଞ୍ଛା ସଫଳକରିବ । ମନରୁ ତୋର ସନ୍ଦେହ ଛାଡ଼ । ନିଶ୍ଚେ ଏ କଷ୍ଟ ତୋର ଦୂରହୋଇ ଯିବ । ଆଠଗଡ଼ ରାଜା ଏହା ରଚିଲେ ।

## ଶ୍ଳୋକାଂଶ

ସମାଶ୍ରିସିଦ୍ଧ ମାନନ ହୃଦନ୍ତଧୈର୍ଯ୍ୟ କ୍ଳାନ୍ତସ୍ୟା,
ନଟନ୍ତିକପଟପାଟବ ତବପୁରଃ ପ୍ରଣୀତଂ ବଚଃ ;
ଅମନ୍ଦମଧୁମନ୍ଦିରଂ କମରବନ୍ଦରୁନ୍ଦଂ ବନା—
ନୁବନ୍ଧ ମୃଦଂ ହୃଦନ୍ତରଗତାଂ ମିଳନ୍ତୋ ଯୁବା ।

ପୁଷ୍ପିତା ମାକନ୍ଦମଞ୍ଜରୀଂ ବନପ୍ରିୟଇବ, ସରୋଜିନୀଂ ସୁବଶେଲମ୍ବୁ ଇବ, ଚନ୍ଦ୍ରିକାଂ ଚକୋର ଇବ, ପ୍ରତ୍ୟଗ୍ର-ମୁଦିରମଣ୍ଡଳୀଂ ଚାତକ ଇବ, ଚିନ୍ତାମଣିମକିଞ୍ଚନ ଇବ, ତ୍ୱାମନବରତଂ ବଲ୍ଲବମସ୍ତୀମଦ୍ୱେନ୍ଦ୍ରନସ୍ତୁନାନନ୍ଦଃ ସ୍ମରନ୍ କିଶୋରଃ ସୀଦତି, ତ୍ୱଂ କଥଂ ଖେଦନେନ ଖେଦୟସି ଖେଦସୀ ?

**ଅର୍ଥ :—**

**ଲଳିତା**—ମାନିନୀ ଲୋ !
ନହୁଅ ଅଧୀର ।
କହୁଥିଲି କପଟ ବଚନ ସିନା
ପରଖିବ ଧୈର୍ଯ୍ୟ ତୋର ବୋଲି,
କାହିଁ ଗୋ, ଭ୍ରମର ଠାବ
ମଧୁଭରା କମଳିନୀ ଅଙ୍କ ବିନା ?
ବନପୀକ, ଭୁଲିକି ରହିବ ସଖି,
ବଉଳ ମଞ୍ଜରୀ ?
ଚକୋର କି ନଝୁରେ ଚନ୍ଦ୍ରମା ?
ଚାତକ କି ପାଶୋରିବ ନବ ମେଘମାଳା ?
ଜାଣୁ ତ କିଶୋରୀ,
ଚିନ୍ତମନେ ଚିନ୍ତାମଣି ସଦା,
ଦରିଦ୍ର ଯେସନ
ଅତିଦୁଃଖେ ବଞ୍ଚାଏ ଜୀବନ ;—
ସେହି ମତ—
ସେହିମତ ଆରେ ଧନି !
କିଶୋର ଚନ୍ଦ୍ରମା
ଝୁରି ତୋରେ ସରେ ।

କାହିଁକି ଲୋ !
କାହିଁକଲେ ଆଉ ?—
କମଳ ନୟନ କୋଣେ
ଭରି ମାର ବନ୍ଧୁ,
କାନ୍ଦ ଆପେ
କନ୍ଦାଉଛୁ ଗଗନ, ଭୁବନ ?

———

## 'ଧ'

### ଅନୁଚିନ୍ତା

ଧଇଲା ପରାଏ ସରଗ ଗୃହରେ ଚକୋରୀ କଣୋରୀ ଘାଲେ
ଧଅସି ପଦ୍ମରେ ଲଳିତା ସଖୀରେ ; ସତେ କେଉଁ ଭାଗ୍ୟଫଳେ :—
ଧନ ତୋ ଦମ୍ପତ୍ନୀ ଯେବେ କହିଲେ କ ସନମତ ପଦ "ହେଉ"
ଧରା ସରା ଏତେ ଶୁଣି ମଣିବ ଲୋ କୁଳ, ମାନ ଯୋଡ଼ଯାଉ ।

### — ଗୀତ —

ଧୀରା ରେ, କି ଧନ ତୁ ନ ଦେଲୁ ଆଜ ।
ଧଇଲେ କି ସତେ କର ଯୁବରାଜ । ପଦ ।
ଧରମ ବନ୍ଧୁ କି ମୋର, ଧୃପି ଦେଇ ନିଜ କର,
କୋଳକୁ ଆଣିଲୁ କଳାଦ୍ୱିଜରାଜ । ୧ ।
ଧୁରନ୍ଧର ସେ ଇଙ୍ଗିତେ, ଧରଷିଲୁ କେହ୍ନେ ସତେ,
ଧମକାଇଲା ନାହିଁ କି ତୋତେ ଲାଜ । ୨ ।

ଧୱରେ ଯେତେ ପୁରୁଷେ, ଧୂର୍ତ୍ତ ତାହାଙ୍କ ଗୁରୁ ସେ
ଧନରୁ ଯେ ବଳେ ତାହାଙ୍କର ବ୍ୟାଜ । ୩ ।

ଧୃତ ହୋଇ ବଳସ୍ଥାନ, ଧୂସର ହୋଇବା ମନ
ଧୋଇ ଚନ୍ଦ୍ରା କଳଙ୍କ ସମାଜ ମାଜ । ୪ ।

ଧରଣୀନ୍ଦ୍ର ଜଗଦ୍ଦେବ, ଧ୍ୟାନେ ବଲ୍ଲଵୀବଲ୍ଲବ-
ଧବଧୂଳି କରେ ମସ୍ତକରେ ତାଜ । ୫ ।

( ରାଗ—କାଫି । ତାଳ—ଆଠତାଳି )

## — ଗୀତକଥା —

ଶ୍ରୀମତୀ କହିଲେ—ପଣ୍ଡିତା ! ରେ ତୁ ସତେ ଆଜ ମୋତେ କି ଧନ ନ ଦେଲୁ ? ସତ କହ ସଖି, ବ୍ରଜ ଯୁବରାଜ ତୋ ହାତ କ'ଣ ଧରି ପକାଇଲେ ? । ପଦ ।

୧—ସତେ କ'ଣ ମୋ ଧର୍ମ-ବଳରୁ ତୁ ହାତ ବଢ଼ାଇ ସେ କଳାଚନ୍ଦକୁ କୋଳକୁ ଆଣିଲୁ ସଖୀ ?

୨—ସେ ତ ପକ୍‌କା ଅଝଟ । ତୁ ସତେ କେମିତି ସାହସ କରି ତାଙ୍କ ମନ କଥା ବୁଝିଲୁ ମ ? ତୋତେ ଟିକଏ ହେଲେ ଲାଜ ଲାଗିଲା ନାହିଁ ?

୩—ସଂସାରରେ ଯେତେ ଧୂର୍ତ୍ତ ପୁରୁଷ ଅଛନ୍ତି ସେ ତାଙ୍କ ଭିତରେ ଗୁରୁ । ତାଙ୍କର ତ ମୂଳରୁ ସୁଧ ବେଶି । ସେ ଯେତିକି କହନ୍ତି, ତା'ଠାରୁ ବଳିକରି କଥା ଆଦାୟ କରନ୍ତି ।

୪—ସଖି ! ମୁଁ ଧୈର୍ଯ୍ୟ ହରେଇ ଦେଇଛି । ମନ ସେଥିପାଇଁ ମଇଳା ହୋଇଯାଇଛି । ତାକୁ ଧୋଇଧାଇ ସଫାକରି ମନରୁ ମୋର ଚିନ୍ତା ଘୁଞ୍ଚାଇ ଦେ । ୪ ।

୫—ରାଜା ଜଗଦ୍ଦେବ ଧ୍ୟାନରେ ସେହି ଗୋପୀ ଓ ଗୋପାଳ-ମାନଙ୍କର ବାସସ୍ଥାନର ଧୂଳିକୁ ମଥାର ମୁକୁଟ କରି ଦେଉଛନ୍ତି ।

## ଶ୍ଳୋକାଂଶ

**ଭୂତରଦ୍ୟ ସଖି କିଂ ନ ବର୍ତ୍ତର୍ଣ୍ଣା, ଯନ୍ନମ ଶ୍ରବଣସୀମ୍ନି ବକ୍ତ୍ରାର୍ଣ୍ଣା,**
**ସ୍ୱୀକରଜରବ ଶର୍ମଲତାୟାଃ, ସଖି ଚେନ୍ଦୁମୁଖୀ ବାଗନୁକୂଲା ।**
**ଯଦମୀର୍ମିତପ୍ରାକ୍ତରଶ୍ରେଣ୍ୟାଃ ପ୍ରତ୍ୟଗ୍ରବୃଷ୍ଟିରିବ, ରଜନ୍ୟାଃ କୌମୁଦୀବ,**
**ତମଃସମ୍ବୃକ୍ତକବଳିତଶ୍ରିୟେ ଗୃହ୍ୱଲେଖାୟା ଦୀପଶିଖେବ, ଯଦ୍ଧଚଭ-**
**ବୃନ୍ଦେବ୍ରହ୍ମାନନ୍ଦଧାରେବ ସାମ୍ପ୍ରତଂ ମମ ତ୍ୱମସି ।**

**ଅର୍ଥ :—**

ସୁହାସିନୀ, ଶୁଭ୍ର-ଶଶିମୁଖି !
କି ଧନ ତୁ ନ ଦେଲୁ ଗୋ ସତେ ?
ଅନୁକୂଳ ବଚନ ତୋହର
ସତେ ଏକା ସିନା ମୋର
ସୁଖ-ଲତା ଉପଜାନ୍ତ ମୂଳ ।
ଘୁରୁ ଗୀତଧମ ଧ୍ୱନେ,
ଝାଉଁଳା ତରୁ-ଅଙ୍କୁର
ଲଭିଲ କି ସତେ ଅବା
ଆଶାଦନ ନବ ବାରି ଲଳିତ ପରଶ ;
ଅବା, କୃଷ୍ଣ ନଶିଥିନୀ ବୁକେ

ହିମକର ଚନ୍ଦ୍ର ଦେଲା ଛୁଆଁ !
ଅନ୍ଧ-ଗୁମ୍ଫା ଘେର ଘରେ
କେ ଦେଲା ଗୋ ଜାଳି ସତେ
ଉଜ୍ଜଳ ଦୀପାଳି ?
ବ୍ରହ୍ମାନନ୍ଦ ଧାରା ଅବା କି ଏ ;—
ସଂଯମୀ ଯତିର ଯାହା ଚିର ଆକାଂକ୍ଷୀତ,
ସତେ ସତ୍ୟ, ସେହି ମନ୍ତ୍ର—
ସେହି ମନ୍ତ୍ର ବାଣୀ ତୋର
ଆନନ୍ଦ ଦେଲା ଗୋ ଆଜ ମୋରେ ।
କହିଲେ ଲଳିତା ଶୁଣି ଏତେ :—

---

'[illegible]'

**ଅନୂଟକ୍ରା**

**ନରେଖ ଧର୍ମର ଉତ୍ଫୁଲ୍ଲା ପୀରଣ୍ଡ ବନ୍ଧ-ଭଙ୍ଗା ଛଇ, ଗୋଇ**
**ନଦା କଇତବ ଭଣିଲ୍ଲ ନପୁଣ ଭଲେ ଭେଳ ନ ଫଳଇ,**
**ନଖୁଣ ସସ୍ୱଗ ଅଛୁ ବୋଲ ତାର ନ ପାରିଲ ଅନୁମାନ**
**ନସ୍ୱଷ୍ଟରେ ଶଠ ଦଗାଦାର ସେ ତ କେ ଥବା ନ ଅଛୁ ଜାଣି ?**

— **ଗୀତ** —

ନବବିଳାସିନି ରେ, ନବବେଶ-ହାସିନି । ପଦ ।
ନାହିଁ ବୋଲିବା ବାଣୀ, କପଟ ନାହିଁ ଶୁଣି
କମଳାକ୍ଷି ରେ ହୋଇ ବଶ ହେବ,
ନନ୍ଦନନ୍ଦନ ପ୍ରେମା, ତ୍ରିଭୁବନରେ ନୁହେଁ ଜମା,
କାନ୍ତମ୍ନିମାଙ୍କ ମେଦେ ଗନ୍ଧ ଥିବ । ୨ ।

ନିଷ୍ଠୁରଗୁଣ କୁଳ— ଶିରୁ ପଡ଼ୁଛି ବଳି
ନିଷ୍ଟପୁ ତିନବର୍ଣ୍ଣ ନାହିଁ ଲେଖି ।
ନାଗରୀବଟମୋହନ ମନ୍ତ୍ର ମାନ୍ତ୍ରକ ମନ-
କପଟ ସମ୍ପୁଟରେ ଅଛି ରଖି । ୨ ।
ନିରନ୍ତରପୂ ରସ— ପ୍ରସାରଣେ ପୀୟୂଷ-
ଧାରାଧିକ୍କାରକାରୀ ପରି ଲାଗେ,
ନିମିଷକରେ ଜ୍ୱାଳା ଜନ୍ମାଏ କିଣି ହଳା—
ହଳକୁ ଯେ ସଙ୍ଖାଳି ମହାନାଗେ । ୩ ।
ନିଶି ଦିନ ଶୟନ, ନ ଜାଣଇ, ନବୀନ
ବିସିନୀଦଳ ଶେଯ ଯାଏ ଜଳି,
ନୀପବନ ପବନ, ନିର୍ଦ୍ଧୂମଶିଖ ଧନ—
ଜ୍ଞିଘ୍ନୁ ଖ୍ୱାସରୁ କରେ କଣ୍ଟକେଳି । ୪ ।
ନିନ୍ଦାର ନିକେତନ, ହୋଇବୁ ରେ ନୂତନ—
ମନ୍ଦାର-ବନ୍ଧୁ-କୁରୁବିନ୍ଦାଧରା,
ନିଶା-ରମଣ-କର -- କଳକା-କଣ ଚୋର,
ହୋଇଯିବ କଳ୍ପାନ୍ତ କାଳ ଖରା । ୫ ।
ନ' ବରଷରୁ ଊଣା କାକୁତ ଅଛି ଜଣା
ନଖାଗ୍ରେ ଉଦ୍ଧରିଲୁ ଗୋବର୍ଦ୍ଧନ,
ନବନୀରଜ କୋଷ— ନୀଭ ତୋ କୁଚ କିସ
ଅଣ୍ଟିବ କଣ୍ଠୀରବମଧ୍ୟା ଯେନ । ୬ ।
ନିବେଦନ କରୁଛି କରକଞ୍ଜ ଧରୁଛି,
ହେଲେ ହେଉ ଅରୁଚି ନିଦ୍ରାହାରେ,
ନରନାଥ ଶ୍ରୀହରି— ଚନ୍ଦନ ବନ୍ଦେ ଗୋଶ,
ନ ରସ ନୀଳବାହା ମୁଦ୍ରାହାରେ । ୭ ।

---

( ରାଗ-କାମୋଦ । ତାଳ—ଝୁଲ୍ଲ । )

## — ଗୀତକଥା —

ରେ ଚନ୍ଦ୍ରହାସିନୀ ନବରସିକା, "ନାହିଁ" ବୋଲି ପଦେ କଥା ମୁଁ ତା'ଠାରୁ ମୋଟେ ଶୁଣିନାହିଁ । ହେଲେ ଏକଥା "ହୋଇ" ଅବା କଅଣ ହେବ ? ଆରେ କମଳନୟନା, ଯେବେ ନିତମ୍ବବତୀ କେହି ଯୁବତୀର-ଅନ୍ୟ ଗତି ଥାଏ, ତେବେ ତା ପକ୍ଷରେ ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କର ପ୍ରେମରେ ବୁଡ଼ି ରହିବା ଆଦୌ ଉଚିତ୍ ନୁହେଁ । ୧ ।

ତା ନିଷ୍ଠୁରପଣିଆ ବକ୍ରକୁ ବଳି ପଡ଼ୁଛି । ନ, ଷ୍ଟ, ସ୍ଥ — ବୋଲି ତିନୋଟି ଅକ୍ଷର ସେ ତେବେ ଲେଖିନାହିଁ, କି ଜାଣିନାହିଁ । ତା ମନ—ରୂପୀ କପଟ ଫରୁଆରେ କେବଳ ନାରୀମାନଙ୍କୁ ବଶ କରିବା ମନ୍ତ୍ରଟି ଭରି ରଖିଛି ସେ । ସହଜରେ ନାଗରୀମାନଙ୍କୁ ବଶ କରିଜାଣେ ମାତ୍ର କାହାରିଠାରେ ସେ ନିଶ୍ଚିତ ପ୍ରେମ ରଖେ ନାହିଁ । ୨ ।

ସେ ଯେତେବେଳେ ଅନୁରାଗ ଅବା ସରାଗ ଦେଖାଏ, ମନେହେବ ସତ୍ୟ, ସତେ ଅମୃତ ଧାର ଅବା ଭୁଞ୍ଜ, ପୁଣି ଲହମାକ ଭିତରେ ତାହା ସାପର ଶଙ୍ଖୁଆ ବିଷଠାରୁ ବଳିକରି ପୀଡ଼ା ଦିଏ । ୩ ।

ସହିରେ, ଏଇନେ ତୋ ବିରହରେ ଆଖିରେ ତା'ର ରାତି କି ଦିନ ନିଦ ନାହିଁ, ପଦ୍ମ ପତ୍ର ଶେଜ ବିରହ ଜ୍ୱାଳାରେ ଜଳିଯାଉଚି, କେଳିକଦମ୍ବ ବଣରୁ ବହି ଆସୁଥିବା ପବନ ଧୂଆଁ ନଥିବା ନିଆଁ ଧାସଠାରୁ ଆହୁରି ତାତିଲା ଜଣା ପଡ଼ୁଛି । ୪ ।—

ବାକ ରେ ରଙ୍ଗଅଧରା, ତୁ ତା ଆଡ଼କୁ ମନ ଢାଳି ଦେଲେ ଲୋକନିନ୍ଦା ସାର ହେବ, ବନ୍ଦିଏ ଚନ୍ଦ୍ରକିରଣ ପ୍ରଲୟ ଖରାପରି ବାଧିବ ତୋତେ । ୫ ।

ସଖି ! ଟିକିଏ ମନରେ ଭାବିଲୁ, ନଅ ବରଷରୁ ଊଣା ବୟସରେ ପରା ସେ ନଖ ଅଗରେ ଗିରି ଗୋବର୍ଦ୍ଧନକୁ ଟେକି ଧରି ଥିଲେ, ଏକଥା ବା ନ ଜାଣେ କିଏ ? ଆରେ ସିଂହକଟିଶୋଭିନୀ, ବଢ଼ିଆସୁଥିବା ପଦ୍ମକଢ଼ିପରି କୁଚ ତୋର, ସେ କଅଣ ତାକୁ ଅଣ୍ଟିବ ? । ୬ ।

ମୁଁ ତୋ କରକମଳ ଧରି ନେହୁରା ହେଉଛି ସଖି ! ଖିଆ-ପିଆ ତୋତେ ଅରୁଚ ପଛକେ ହେଉ, ସେ ନୀଳଭୂଜର ଆଲିଙ୍ଗନକୁ ଗଳାମାଳା କରିବାକୁ ଆଉ ମନ ବଳାନା । ରାଜା ଶ୍ରୀହରିଚନ୍ଦନ ବନ୍ଦନା କରୁଅଛି । ୭ ।

## ଶ୍ଳୋକାଂଶ

ମଦ୍‌ବଳ୍ଗୁଜପନମାଦରେଣ ମହତା ସିକ୍ତ୍ୱାନସ୍ୟନ୍ତ କେଶବଃ,
କର୍ଣ୍ଣାଭ୍ୟର୍ଣ୍ଣମପର୍ଣ୍ୟମୀଶ୍ୱରି ତଥା ଭଙ୍ଗୀସ୍ତ୍ରଦଙ୍ଗୀକୃତେଃ,
ସତ୍ୟଂ ତାବଦଦଂ ତଥାପି ସୁଦୃଶାଂ ଗତ୍ୟନ୍ତରଂ ଚେଦ୍‌ଭବ,
ପ୍ରେମା ତନ୍ନ ବକ୍ରେ ଶିଖଣ୍ଡମୁକୁଟେ ଢେଘ୍ୱୋ ନ ହେୟଃ ପରମ୍ ।
କୃଷ୍ଣଂ କୃଷ୍ଣବର୍ଣ୍ଣାନିମିବ ଶଲଭରାଜିରଶିତ୍ୟଦ୍ଧାଦୃଶଂ
ବାମଭ୍ରୂବାଂ ଚେତୋବୃତ୍ତିଃ ଶର୍ମୈତର୍ମେମିନଲୁଭବତ ।

**ଲଳିତା :—**

ବ୍ରଜେଶ୍ୱରୀ,
ଆଦରେଲେ, ହସି ମନ୍ଦ ମନ୍ଦ
ଘେନଲେ ମୋ ନିବେଦନ କାହ୍ନୁ ।
ବାଉଳି ମୁଁ ଭଙ୍ଗି ଅନୁସରି,
ଅଙ୍ଗୀକାର ସତେ କଲାପରି ।

ତଥାପି ଲୋ, ନାଗରୀରତନ,
କ ବସ୍ତୁ ସ ଶିଖୀଚୂଳଆରେ ?
ଧୂର୍ତ୍ତ ଶିରୋମଣି ସେ ତ, କଏ ବା ନ ଜାଣେ ?
ଆନ ଗତି ଥିବ ଯା'ର
ଶ୍ୟାମ ଭୁଲେ ପ୍ରେମ ଆଶା
ନ ଆଣୁ ସେ ମନେ ।
ମୋ ବସ୍ତୁରେ ସଜନୀ ଲୋ,
ତୁଚ୍ଛ ଜ୍ଞାନେ,
ଶ୍ୟାମଠାରୁ ଦୂରେ ଥିବା ଭଲ ।
ବାଧୁଛି ଏତିକ ମୋତେ,
ସୁକୁମାରୀ ସୁନ୍ଦରୀ ତୋ ସଭ
କାହ୍ନୁଠାରେ ଢାଳି ଦେଇ ମନ,
ଘାର ଯାହା ହୁଏ ମହା ଦୁଃଖେ ;—
ପତଙ୍ଗ ଯେସନ,
ନ ବସ୍ତୁର ମଙ୍ଗଳାମଙ୍ଗଳ
ଆଶ୍ରା ଲୋଡ଼ି ଅନଳଶିଖାର
ବରଆଣେ ଜୀବନର ଦୁଃଖ ।
ଲଳିତା ଭଣିତ ଶୁଣି—
ଫଣସ୍ଥ ଦୋଳାରେ ଦୋଳି
ଭଷିଲେ ଶ୍ରୀମତୀ :—

————

## 'ପ'

### ଅନୁଚିନ୍ତା

**ପଡ଼ିଲେକି ଖସି ସ୍ୱରଗୁଁ ପାତାଳେ କଣୋଶ୍ୱି ହେଲେ ସେ ସର**
**ପୀଡ଼ି ନିଳଚାର କର ପସୁରଲେ, ଏକ କଥା ସନ୍ଧବସ୍ତି,**
**ପନ୍ଧଲୁ କନ୍ଧଲୁ ଫଖୋଳିଲେ ବନ୍ଧୁ ସନମାନ କରି ତୋତେ**
**ପଣା ନଈ ବୋଲି ପେଲି ଦେଉ ସଖି, ଗଣ୍ଡରେ ପଛନ୍ତେ ମୋତେ ?**

### — ଗୀତ —

ପ୍ରିୟସଖି, ପରମାଦ ବଡ଼ ତୁହି ଗୋ,
ପାରୁ କେତେ ଛନ୍ଦେ ମୋହି ଗୋ । ପଦ ।

ଚରମ-ପଦରେ ଦେଇଜାଣୁ ତୁ ବସାଇ,
ପୁଣି ତହୁଁ ଜାଣୁ ତଳାତଳକୁ ଖସାଇ,
ପାଶୋରାଇ ମନୁ ନାନା କଦନ ଲସାଇ,
ପୀଡ଼ୁ ଅଶ୍ରୁ ବରଷାଇ ଗୋ । ୧ ।

ପ୍ରପଞ୍ଚ ଢାକରେ ଜଣା ନ ଥାଇ ସଂଶୟ,
ପସନ୍ଦ ନୁହଇ ପର ପୁରୁଷରେ ସ୍ନେହ,
ପରବଶ ହେବ ଯେବେ ପ୍ରାଣତୁଲେ ଦେହ,
ପ୍ରାଣୀ କି କରିବ କହ ଗୋ । ୨ ।

ପରବଚନ୍ଦ୍ର ଚପୁଡ଼ି ପିଇବା ପୀୟୁଷ,
ପରଣତ ସମୟେ ସେ ହେବ ଯେବେ ବିଷ,
ପ୍ରସନ୍ନ ହେବା ଗଙ୍ଗାରେ ଜନ୍ମିଲେ କଲ୍‌ବିଷ,
ପ୍ରତ୍ୟାଗ କରିବା କିସ ଗୋ । ୩ ।

ପିଆଇ ଦୁର୍ବିଙ୍କୁ ଥରେ ଦୁର୍ବିଙ୍କ ଅଧର,
ପଛେ କହୁ ଆଚରଣ ପୂତନା ବଧର,
ପୀତପଟ ନଟ ନାଁ ମୋ ଆଗରେ ନ ଧର,
ପାଳଏ ମାନ୍ତ ଉଦ୍ଧର ଗୋ । ୪ ।

ପୁରନ୍ଦର-ମଣି ଶ୍ୟାମେ ଅଛୁ ମୋ ଭରସ,
ପରପରବାଦ-ମୁଣ୍ଡେ ଟାକର ବରଷ,
ପୃଥ୍ୱୀଚକ୍ରବାଳ ପରବୃଢ଼ ବାଲୁକେଶ,
ପ୍ରସରାଇଲେ ଏ ରସ ଗୋ । ୫ ।

( ରାମ-ଭୈରବ । ତାଳ-ଆଠତାଳି )

## —ଗୀତକଥା—

ଶ୍ରୀମତୀ କହିଲେ —

ତୁ ବଡ଼ ଦୁଃଖ ଦେଉଛୁ । କେତେ ଛଳରେ ସତେ, କେତେ କଥା କହୁଚୁ ! କେତେବେଳେ ତୁ ସ୍ୱର୍ଗରେ ବସାଇ ଦେଇ ଜାଣୁଚୁ ପୁଣି କେତେବେଳେ ପାତାଳକୁ ମଧ୍ୟ ଖସାଇ ଦେଇ ପାରୁଚୁ । ମନର ଦୁଃଖ ଭୁଲାଇ ଦେଉଚୁ ପୁଣି ବଳେଇ ମଧ୍ୟ ପାରୁଚୁ । ୧ ।

ପରମ ପୁରୁଷରେ ସ୍ନେହ ବଢ଼େଇବା ପସନ୍ଦ କଥା ନୁହେଁ — ଏ କଥା ତ ଜଗତଯ କ ଜାଣନ୍ତି । ବାକ ଦେହ ଓ ପ୍ରାଣ ଯଦି ପରର ଅଧୀନସ୍ଥ ହୁଏ, ସେତେବେଳେ ପ୍ରାଣୀ କ'ଣ କରିବ, କହ । ୨ ।

ପୂର୍ଣ୍ଣ ଚନ୍ଦ୍ରକୁ ଶପୁଡ଼ ଅମୃତ ପିଇ ଜୀର୍ଣ୍ଣ କଲା ବେଳକୁ ଯେବେ ସେ ବିଷ ପାଲଟେ, ଆଉ ଗଙ୍ଗାକୁ ଆଶ୍ରାକରି ଗାଧୋଇଲେ ଯେବେ ପାପ ହୁଏ ତେବେ ସେଥିକି କ'ଣ କରିବା, କହ । ୩ ।

ସଜ୍ଞ ମ, ଆଗେ ଆମ ଦୁହିଁଙ୍କୁ ଦୁହିଁଙ୍କ ଅଧର ଚୁମ୍ବନର ସୁବିଧା କରଦେ, ପଛେ ତୁ ସେ ପୁତନାକୁ ମାରଥିଲେ ବୋଲି କହୁଥା, ଅର୍ଥାତ୍—ଆମର ମିଳନ ଘଟାଇ ଦେଇସାରି ପରେ ତୁ ତାଙ୍କୁ ନାଗ୍ରମର୍ଦ୍ଦ ବୋଲି କହ । ସେ ପୀତପଟ ନଟ ଅର୍ଥାତ୍—ହଳଦିଆ-ଲୁଗା ପିନ୍ଧା ଜଣେ ନଟକୁଟିଆ ବୋଲି ମୋ ଆଗରେ କହନା । ମତେ ଏ ଦୁଃଖରୁ ଥରେ ପାରିକର । । ୪ ।

ଲୋକନନ୍ଦା ମୁଣ୍ଡରେ ଠଣା ମାରିଦେ ସଖି ! ସେ ଇନ୍ଦ୍ର-ନୀଳମଣି ଶ୍ୟାମଙ୍କଠାରେ ମୋର ପୂର୍ଣ୍ଣ ଆଶା ଅଛି । ରାଜା ବାଲୁକେଶ ଏ ରସ ପ୍ରଚାର କଲେ । ୫ ।

### ଶ୍ଳୋକାଂଶ

ମାମଭ୍ରଂଲିହନବ୍ୟଦ୍ରବ୍ୟବଡ଼ଖ୍ରୀନର୍ଯୀ ହ୍ରପର୍ଯୀଙ୍କିକା—
ସଂବଷ୍ଟାଂ ସ୍ୱବଧାସ୍ୱ କ୍ଷିପସି କିଂ ତସ୍ମାଦଧୋଽଧଃ ପୁନଃ ।
ଆର୍ତ୍ତସ୍ୟାତପିପାସୟାମୃତଙ୍ଖବାର୍ତ୍ତାଂ ନବେଦ୍ୟଗ୍ରୁତୌ,
ଭୂୟଃ ଶମ୍ବୁକଦମ୍ବକେଲିକଠିନଂ କିଂ ଖରଣ୍ଡଂ ଖପସେ ।

ଜନ୍ମୋଃ ସନ୍ତତଚନ୍ଦ୍ରାବୁନ୍ଦୁଦକୁନ୍ଦମୁଖାରବିନ୍ଦତନ୍ଦୁଦସ୍ୟସ୍ୟ ପିପାସାର୍ତ୍ତିସ୍ୟ ବଦନାନ୍ତକେ ସୁଧାସୁଧାରଂ ବନ୍ୟସ୍ୟ ମନ୍ଦ୍ରମନ୍ତରେଣ ପୁନରଚ୍ଛିଦ୍ୟ କୋ ବା ଜନୀଷଠ ।

**ଶ୍ରୀମତୀ**—ଏ କି କଲୁ ସଖୀ,

ମେଘ-ଛୁଆଁ ସରସ ସୁନ୍ଦର ପୁରେ
ବାଡ଼ବେଗ ପଲଙ୍କେ ଶୁଆଇ ମୋତେ,
ଦେଉ ପୁଣି ଖସାଇ ତଳକୁ ?
ଶୋକରେ ବକଲବେଳେ

କାନେ ଥରେ
ଅମୃତ ମିଳିବ ବୋଲି
ଆଶା ବାଣୀ ଭରି,
କପଟ ଲୋ, ସତେ
ଶୁଣାଇ ପାରୁଛୁ କହ
ବଜ୍ରଠାରୁ କଠିନ ବଚନ ?
ଶଲ୍ୟ-କୁନ୍ତଘାତ
ନଖ ନଖ ଦେଉଛ ଲୋ ପୀଡ଼ା ।
ଅମୃତର ଧାର ଢାଳି
ମୁଖ ପାଖେ ତା'ର
ଅଦୋଷରେ କାଢ଼ିନେବ
କିଏ ତା ଆଗରୁ ?

ବନସ୍ଥ ବଚନ ଶୁଣି ଶ୍ରୀମନ୍ତଙ୍କ ମୁଖୁଁ, କହିଲେ ଲଳିତା—

---

'ଫ'

## ଅନୁଚନ୍ତ୍ରା

ଫଡ଼କା ଉଡ଼ା ରୁ 'ଶ୍ୟାମ-ସୋହାଗିନୀ' ବୋଲାଇ ବରଜ ସାରା
ଫିଟାଇ କହୁଛ ମରମ-ଗଣ୍ଠି ମୁଁ, ଫଳ ତାର ଏଡ଼ା ପରା ?
ଫୋପଡ଼ ବଳାଇ ବାଞ୍ଛ ଅମୃତାକେ, ଫମିଟାକୁ ଆଶା ଚାହିଁ ?
ଫମ୍ପାକଥା କହୁ ତୋ ମନ ରଞ୍ଜାଇ ଲଳିତାଜାଣି ତ ନାହିଁ ।

## — ଗୀତ —

ଫାଟି ପଡ଼ିବାର ନିକୁଞ୍ଜସଞ୍ଚାର-ଶ୍ରମୁଁ ମୋ ଚରଣତଳ,
ଫତୁଅଂଖୋର ଆଖିରକୁ ହେବାର ଏହ୍ୱ ଏକା ଏଥୁ ଫଳ,
ରେ କିଶୋର, ଫିଟିଗଲା ଯେ ସନ୍ଦେହ,
ଫୁଲଗଲୁ ଫୁଲଲଲାମରସିକା ଜାଣି ପର ଶ୍ୟାମ ସ୍ନେହ ରେ ।୧।

ଫନ୍ଦାଇ ନାନା ବନପ୍ରେ କହ୍ନ ଦନ୍ତେ ତୃଣ ଧରିବାର ହେଲା,
ଫଠା କପାଳରେ କୁଟିଳ-ହୃଦୟା ବୋଲାଇବା ଲେଖାଥିଲା,
ରେ କିଶୋର, ଫନ୍ଦାଧନ ତୁ ତ ମୋର,
ଫରିଆଦ କାହିଁ ତୋ ନାମେ କରିବ ନିନ୍ଦାକଲେ ପଛେ କର ରେ ।୨।

ଫରୁଆରେ ପରି ଉଟିଜରେ ଭରି ରଖ ସେ ମାଳମଣ୍ଡିକ,
ଫଉକତୁଲେ କୁଞ୍ଜଦ୍ୱାରେ ରଖାଅ ବେତ୍ରବଲ୍ଲୀଧାରିଣୀକ,
ରେ କିଶୋର, ଫରମାସ ମନେ ମନେ,
ଫେଇଦାଅ ତୁ ମୋ ଆବୁର ମୁଁ ଯେବେ ଯିବ ସେ ଦିଗକୁ ଦିନେ ରେ ।୩।

ଫକତ ହୋଇ ଦୂରରେ ଥିଲେ ତୋତେ ଭଜି ତ ଥିବାର ସତ,
ଫେଡ଼ନ୍ତୁ ତୋ କଷ୍ଟ ସୁଖଦେଇ ଅଷ୍ଟଗ୍ରନ୍ଥ ଏ ଆମ୍ଭ ବାଞ୍ଛିତ,
ରେ କିଶୋର, ଫୁରୁଣା ହୋଇ ତୁ ରସ,
ଫେରିଆସି ମାନ ଆମ୍ଭ ଆଗେ ନେତ୍ରକଞ୍ଜୁମାର ନ ବରଷ ରେ ।୪।

ଫୋଟକା ହେଉଛୁ ସିଞ୍ଚିବା କର୍ପୂର ଚନ୍ଦନ ମିଶ୍ରିତ ବାରି
ଫୁଙ୍କିଦେଲେ ଉଡ଼ିଯିବା ପରି ସଢ଼ ଅଛୁ ଟି ତନୁ ବଲ୍ଲରୀ,
ରେ କିଶୋର, ଫୁକାର ନୋହୁ ଜଗତେ,
ଫତୁଆ ନୁହଇ ବୋଲେ ଜଗଦ୍ଦେବ ରଘୁନନ୍ଦନ ଏ ଗୀତେ ।୫।

(ରାଗ– ଖମ୍ବାଜ—ତାଳ-ଆଠତାଳି)



"ଫିଟାଇ କହଲ ମରମ-ଗଣ୍ଠି ମୁଁ ଫଳ ତାର ଏହା ପର ?"

—ଲଳତା

## — ଗୀତକଥା —

**ଲଳିତା କହୁଛି—**

ଶ୍ରୀମତି, କୁଞ୍ଜବନକୁ ଦଉଡ଼ାଦଉଡ଼ି କରି ମୋ ଛାତିଟା ଫାଟିଲା, ତେବେବି ତୋ'ଠାରୁ 'ମିଛୁଆ' ବୋଲି ଅପବାଦ ଶୁଣିବାକୁ ଥିଲା। ଏଇଟା ହେଲା ଶେଷ ଫଳ କିନା ! ହଉ, ସେ କୁସୁମ-ରସିକା, ଏଥର ଶ୍ୟାମ ସ୍ନେହରେ ଆଉ ସନ୍ଦେହ ନଥିବାରୁ ଜାଣି, ମନେ ମନେ ଫୁଲିଗଲୁ ପରା ? । ୧ ।

କେତେ କାକୁତି ମିନତି ହୋଇ ତାଙ୍କୁ କହିଲି, ଶେଷରେ ଦାନ୍ତରେ କୁଟା ଧରିବା ଯାଏ ଗଲି । ହେଲେ, ଫଟାକପାଳକୁ ମୋ'ର 'କୁଟିଳା' ବୋଲି ଶୁଣିବାକୁ ଥିଲା ! ହଉ ହେଲା, ଆଉ କାହା ଆଗେ ନାଲିଶ କରିବି ? ତୋତେ ତ ଆଶ୍ରା କରି ପଡ଼ିଛୁ, ନନ୍ଦାକଲେ, କର । ୨ ।

ଏବେ ତୁ ଫରୁଆରେ ସମ୍ଭାଳିଥିବା ସେ ନୀଳମଣିକି ତୋ କୁଚ ଭିତରେ ପୂରାଇ ରଖ ; କୁଞ୍ଜଦ୍ୱାରରେ ବେତଧରା ପ୍ରହରୀ-ମାନଙ୍କୁ ଜଗାଇଦେ, ଯେମିତି ସେ କୁଆଡ଼େ ପଳାଇ ନପାଏ । ମନେ ମନେ ସବୁକଥା ତୁ ବିଚାର କରିଦେ । ଆଉ ମୁଁ ଯେବେ କେବେ ସେ ଆଡ଼କୁ ଯାଏଁ ମୋ ମହତ ସାରିଦେ । ୩ ।

ଆମକୁ ତୁ ଅପମାନ ଦେଇ ଦୂରକୁ ଠେଲି ଦେଲେ ବି ଆମେ ତୋତେ ଭରସା କରି ରହିଥିବୁ । ବିଧାତା ତୋ ମନବାଞ୍ଛା ସଫଳ କରୁ, ଏତିକି ଆମର କାମନା । ବାକି ଦେଖ୍, ସେଠାରୁ ଫେରି ତୁ ଯେମିତି ଆମ ଆଗରେ ଆଉ ଲୁହ ନ ଝରାଉ ।୪।

ଏଇନେ କର୍ପୂର ଚନ୍ଦନଜଳ ତୋ ଦେହ ଫୋଟକା କରି ଦେଉଛି; ଏମିତି ଶୁଖି ଗଲୁଣି ଯେ ଫୁଙ୍କି ଦେଲେ ଟଳିପଡ଼ିବୁ । ଯାହା ହେଲା ହେଲା, ଏ କଥା ଆଉ ସଂସାର ନଜାଣୁ । ତୁ ସଫଳ ମନୋ-ରଥ ହୁଅନା । ଜଗଦ୍ଦେବ ହରିଚନ୍ଦନ ଗୀତରେ ଏହା କହିଲେ ।

**ଶ୍ଳୋକାଂଶ**

**ଆକୃଷ୍ଟଂ ଭବନାଦ୍‌ବନାଦପି ତଦା ପ୍ରୋଞ୍ଝ୍ୟ ଙ୍କସୌଧୋଦରମ୍,**
**ଯାତାସ୍ତାଭ ପଦାନ୍ତପାତଜଫଳଂ ଲବ୍ଧଂ ମୟୈତଃ ପରମ୍ ।**
**ଅନ୍ୟାପେକ୍ଷିତଶୂନ୍ୟମୀଶ୍ୱର ଯୁବାମନ୍ୟୋନ୍ୟଦୌତ୍ୟେନ ତନ୍ତୁ**
**ସୌଭାଗ୍ୟଂ ଭଜତଂ ମୁଦାନୁଭବତଂ ନାସ୍ମାପି ମାସ୍ତାଭଜା ।**

**ହା ହା ଚନ୍ଦ୍ରକଚୂଡ଼ାନନ୍ଦନଚରଭେ, ମାମପ୍ରତ୍ୟସ୍ତଦୂତ୍ୟବଶିଷ୍ଟାଂ ନ ଜବଣ୍ଣ୍ଟତ୍ୟ ପ୍ରତ୍ୟହଂ ପ୍ରତ୍ୟୁହପ୍ରତିହ୍ୱନ୍ୟମନମାନୋରଥମଞ୍ଜୁସଫଳ ଲଭସି ।**

**ଲଳିତା**—ମିଳିଗଲ୍, ମିଳିଗଲ୍
ମୋତେ ଲୋ୍ କିଶୋର !
ପୁରୁଂ ତୋର କୁଞ୍ଜବନ ଦଉଡ଼ାଣି ଫଳ ।
ଏଥରକ ତୁମେ ଦୁହେଁ,
ନଜ ନଜ ଦୂତ, ଦୂତୀ ରୂପେ
କାର୍ଯ୍ୟସାଧି,
ଲଭ ଗୋ ସୌଭାଗ୍ୟ ସୁଖ ।
ମାସ୍ଥାବଜା ମୁହିଁ ରହ !
ମାଡ଼ବ ନାହିଁ ଗୋ କେବେ ଏକୁଞ୍ଜ ଦୁଆର ।
ଏତିକ ମାତ୍ରକ ଦୁଃଖ ହୁଏ ମନେ ମୋର—
ଦୂତୀ ରୂପେ ପଠିଆଇ
ମୋହୋପର ଅବଶ୍ୟାସିମାରେ
ନତ ନତ ହେଲ ଯାହା
ମନୋରଥ ବଫଳ ତୋହର ।
ତହୁଁ ; ଲଳିତା ମୁଖର ବାଣୀ ଶୁଣି –

---

• ୨ •

## ଅନୁଚନ୍ତା

ବାଲ୍ୟବାତ୍ସୁଟିଆ ଚର୍ମଚର୍ବେଲେ କର୍ଣ୍ଣରେ ପଡ଼ିଲା ସତେ !
ବାଣୁଆଁ ଲଖରେ ଚଆଡ଼ ବାଜିଲା ଭୁକ ପିଠି ପଶ୍ଚତେ,
ବଜୁଥିଲା ସିନା ବନାଇଁ ଲଳିତା କଇତବ କଥା କହ୍ନ,
ବାରିନପାର ତା' ବୋଇଲେ କଣୋଣ୍ଡ ବଞ୍ଚାଅ ରେ ଜୀବ ସହ୍ନ !

## — ଗୀତ —

ବଚକ୍ଷଣାରେ, ବନା ତୋ ପ୍ରୀତି କେ ନାହିଁ ଅଛି ଜଗତରେ । ପଦ ।
ବୋଲ ଦେଲ ସିନା ଗେଲେ ହସି, ବଶ୍ୱେ ତୋ ସମ କାହିଁ ବଶ୍ୱାସୀ,
ବାନ୍ଧିବାକୁ ମୋ ମନ ଭୁ ପାଶି,
ବଶେଷରେ ମୋ ହୃଦନ୍ତର ତୋତେ ଜଣା ରେ । ୧ ।
ବଶ୍ୱମ୍ଭର-ରଜ ଖେଳକାଳୁଁ, ବହ୍ନିଃ ପ୍ରାଣ ପର ପରପାଳୁ
ବଧି-ବଶୁ ନସର୍ଗ-କୃପାଳୁ,
ବ୍ରଜେ ହେଉଛି ଏହି ଉଣ୍ଡ୍ରିମ ବାଜଣା ରେ । ୨ ।
ବକେକଣେ ଯେ ଯାହାକୁ ସ୍ନେହେ; ବଡ଼ ତା'ଠାରୁ ଜୀବନ ନୋହେ,
ବଳ ତାହାଠାରେ ସିନା ସହେ,
ବହୁରଙ୍ଗେ ବୁଲୁଛନ୍ତି ଦେଖ ଅଗଣା ରେ । ୩ ।
ବୋଲେ ଅଷ୍ଟଦୁର୍ଗର ମଘବା, ବଳ୍ଲୀ ନକଟକୁ ଗ୍ଳଲିବ ।
ବଂଶୀଗୀତ ପୀୟୁଷ ପିଇବା,
ବଭ୍ରବଶ ନ ପାରୁଁ ଆସିବା ଅଜଣାରେ । ୪ ।

(ରାଗ—ସାବେରି । ତାଳ – ଆଠତାଳି)

---

## — ଗୀତକଥା —

ଶ୍ରୀମତୀ କହିଲେ—

ଚତୁରୀ ଲୋ, ତୋ ସ୍ନେହ ଛଡ଼ା ମୋର ଆଉ ଏ ସଂସାରରେ କିଏ ଗତି ଅଛି ?

୧— ଗେଲରେ ସିନା କହିଦେଲି ତୋତେ, ହେଲେ ସତରେ ଏ ସଂସାର ଭିତରେ ବିଶ୍ୱାସୀ ବୋଲିବାକୁ ମୋର ଆଉ କିଏ ଅଛି ? ତୁ ଏକା ମୋ ମନକୁ ଫାଶରେ ବାନ୍ଧିଲାପରି ଧରି ରଖିଛୁ । ମୋ ମନ ଗହନର କଥା, ବିଶେଷ କରି, ତୁ ଜାଣୁ ।

୨—ପ୍ରାଣଟା ସିନା ତୋର ମୋ ଦେହ ଭିତରେ ଅଛି, ମାତ୍ର ଧୂଳିଖେଳ ଦିନରୁ ତୁ ମୋତେ ତୋ ଦେହ ବାହାରର ଜୀବନ-ପରି ପାଳି ଆସିଛୁ । ଦଇବେ ତୁ ଦୟାବତୀ ବୋଲି ଏ ଗୋପ-ନଗର ସାରା ନାଗରୀ ବାଜୁଛି ।

୩ - ସଖି ! ଯେ ଯାହାକୁ ସ୍ନେହରେ କିଣେଇକେ, ଜୀବନଟା ତାଠୁଁ ବଡ଼ ନୁହେ ତ ! ଦେଖୁନାହୁଁ, ଯେଉଁମାନେ ସତରେ ଆପଣାର ନୁହନ୍ତି, ସେଭଳି କେତେ ଏମିତି ବାହାରେ ବୁଲୁ-ନାହାନ୍ତି କି ?

୪—ଚାଲ ସଖି, ଲତାକୁଞ୍ଜ ପାଖକୁ ଯିବା, ଶ୍ୟାମ ମୁରଲୀଗୀତ-ସୁଧା ପିଇ, ରାତି ନପାହୁଣୁ ଲୋକଙ୍କ ଅଜଣାରେ ବାହୁଡ଼ି ଆସିବା ।

ଆଠଗଡ଼ର ରାଜା ଏହା ରଚିଲେ ।

---

### ଶ୍ଳୋକାଂଶ

କୌତୁକାଲ୍ପିତମୀଷଦତଥ୍ୟଂ
କୌତୁକା ହୃଦ ଦଧାତି ବୟସ୍ୟା,
ପିଷ୍ଟପେ ମମ ଯଥା ତ୍ୱମହେସ୍ୱା
ପିଷ୍ଟ ପେଷଣଭୟାନ୍ନ ବଦାମି ।

ରସିକାଂ ପ୍ରାଣାଧିକାଂ ତ୍ୱାଂ ବିନାଽ ନଗର୍ଯ୍ୟାଂ ମଦୁକ୍ତ ନୈଷ୍ଠୁର୍ଯ୍ୟ-ନିଦାନପର୍ଯ୍ୟାଲୋଚନସ୍ତୁର୍ଯ୍ୟାଧ୍ୟର୍ଯ୍ୟା କା ବା'ନ୍ୟାଶ୍ରିତଜନ୍ୟାସ୍ତୀତି ଧୈର୍ଯ୍ୟ-ମବଲମ୍ବ୍ୟ ଯଦୁକ୍ତମନୁଚିନ୍ତ୍ୟ ତଦ୍‌ବସ୍ତ୍ୱତ୍ୟ ଗଚ୍ଛାବାଂ ଗତ୍ୱା କୃଷ୍ଣଚନ୍ଦ୍ରିକାସ୍ୱ ଯୌବତଜୀବନାନ୍ୟପାତନ'ଯତମାନ କଟାକ୍ଷଜାଲସ୍ୟାପି ତସ୍ୟ ଖଣ୍ଡିଶିଖଣ୍ଡ-ମଣ୍ଡିତଶେଖରସ୍ୟ ଭ୍ରମଣରମଣୀୟସ୍ୟ'ସ୍ଥା ଭୁବଃ ସୁଷମା ମବଲୋକୟିଷ୍ୟାବଇତି ବିତର୍କ୍ୟ ତସ୍ୟୈନକଲମ୍ବିଜନ୍ତୁଭଣ୍ଡିମାଡ଼ମ୍ବରବଲମ୍ବି ଚରଣେନ୍ଦ୍ରଣଂ ନିଃସତ୍ୟ କଦମ୍ବକୁଞ୍ଜକାନନାନ୍ତର୍ବିବିଶତୁଃ ।

**ଶ୍ରୀମତୀ** :—ସଜନି ଲଳିତା !
କହ ଦେଖି,
କେଉଁ ସଖୀ ଜଗତରେ
ଗାରକରି ରଖେ ସତେ
ବୁକୁରେ ତାହାର—
ଛଳଭରା ଅସାର କଥାକୁ ?
ବଧକ ହୋଇବ ସିନା ଅଧିକ ବୋଇଲେ !—
କିଏ ସେ ନଜାଣେ ଅବା
ତୋର ମୋର ମନ ଦଆଦେଇ ପଣ—
କି ଭଳି ଅଛୁଟ ?
କହିଲୁ ତୁ ସତେ,
କିଏ ଅଛି ଚତୁରୀ ଏସନ
ସାରା ବରଜ ନଗରେ,
ଆଲୋଚନା କରି ଯେ ପାରିବ କେବେ
ନିଷ୍ଠୁର ବଚନ ମୋର ?

ଧୈର୍ଯ୍ୟଧର ସଖି !
ଦିଅ ଲୋ ପାଶୋର ସବୁ କଥା ;—
ଅନୁଗତ ମଣୁ ଯାହା ।
ଚାଲ, ଯିବା ଚାଲ—
ଦେଖିବା ଲୋ,
କାହିଁ ସେହି ରମଣୀ-ମନମୋହନ
ବରଜ ସୁନ୍ଦର —
ଲତା ଉହାଡ଼ରେ ଲୁଚି
ଖେଳାନ୍ତି କଟାକ୍ଷ ସଖୀ,
ଯୁବତୀର ଜୀବନ ନାଶନେ ।
ନିରେଖିବା ଦୁହେଁ ମିଶି
ସେ କାନନ ଶୋଭା ;—
ଯାହା ରମଣୀଯ଼ ହୋଇଅଛି
ଶ୍ୟାମଘନ ଭ୍ରମଣ-ବିଳାସେ ।
ମୂକର ହେଲାରୁ ଯିବା କଥା
ଫେଇ ଚରଣରୁ
ମଦନର ବିଜଯ଼ ଡିଣ୍ଡିମ ଜଣା—
ବାଜେଣି ନୂପୁର,
ପ୍ରବେଶିଲେ ଦୁହେଁ ଧୀରେ
ଲୁଚି ଲୁଚି
କଦମ୍ବ ନିକୁଞ୍ଜେ ।
ତହିଁ, ଲତା ଅନ୍ତରାଳେ ଥାଇ
ଶ୍ୟାମଶୋଭା ଦେଖାଇ ଧୀମାରେ
ଭଣିଲା ଲଳିତା —

"ଭ"

— ଅନୁଚନ୍ତା —

ଭୂଲଇ ଯିନା ମୁଁ କହୁଦେଲ ପଚେଦ ଭଡ଼କ ଗଲୁକ ସତେ,
ଭଲେ କ ତୋ ଦୁଃଖ ସଖି ରେ, ସହୁବ କଣ୍ଠର ନକଲୁ ଏତେ ?
ଭଜ ହେବୁ ଯା'ରେ ଶୟନେ, ସ୍ୱପନେ, ଜାଗରଣେ ଆରେ ଗୋଭ !
ଭଣିଲା ଲଲତା,— ଦେଖିବୁ ଆସ ରେ, ସେ ତ ମରେ ତୋରେ ଝୁରି ।

— ଗୀତ —

ଭଙ୍ଗୀ ଗୃହିଁ, ଭ୍ରୂଗୀଲଭୁଜଙ୍ଗୀ-ଭ୍ରମର, ଛାବସଙ୍ଗି । ପଦ ।
ଭାଗ୍ୟ ଏ ଜନଆଖି, ଜନନରଞ୍ଚି ସଖି, ଜାଣ ରେ,
ଭରମି ନ ଯା'ନ୍ତୁ ମନ୍ମଥ ବାଣରେ,
ଭୁଜପାଶକୁ ଛନ୍ଦ ମୋ ଗଳେ, ଭଡ଼େ ପଦକଞ୍ଜ ଖଞ୍ଜି ଧରଣୀ ତଳେ
ଭୂମଣ୍ଡନା ରେ,
ଭଲ ମାନୁଛୁ ଦେଖ, ମୁଖସୁଧା ମୟୂଖ,
ଅଳକତଳ ଅଖଣ୍ଡିତ ରଚନା ରେଖ,
ଛଳକେ ଦୃଷ୍ଟି ରଖ, ସଖି ରେ, କ ଭଣେ ଚଳାଚଳ,
ଶୃଙ୍ଗୁଚନ୍ଦ୍ରକଚୂଳ । ୧ ।

ଭର୍ତ୍ସିତ ନବରବ, କୁଣ୍ଡଳ-ଯୁଗଛବ, ଗଣ୍ଡରେ,
ଭଦୁର ଏହ୍ନଚି ବଦେବ ମୁଣ୍ଡରେ,
ଭବ୍ୟଦାୟକ ମାଣିକ୍ୟବର, ଭ୍ରମ ଜାତ କରୁଅଛୁ ମଧୁରାଧର,
ଭୂମଣ୍ଡନା ରେ !

ଭ୍ରୂଭଙ୍ଗବତି ସଙ୍ଗ-ବ୍ରତ ନସ୍ତୁମ ଧୃତ,
ଶ୍ରୀଅଙ୍ଗସଙ୍ଗ ମତ୍ତ, ବିନା ଅନାଥ ଦ୍ୟୁତ,
ମଦଦ୍ୱିରଦଗତି, ସଖି ରେ, ଶୋଭାନଧି ତୋ ଗାତ୍ର,
ନ ଚୁମ୍ବୁ ଶ୍ୟାମ ନେତ୍ର ।୨।

ଭଙ୍ଗୀତ୍ରୟରେ ଉଭା, ହେବାର କେଡେ ଶୋଭା, ପ୍ରକାଶେ
ଉରଜ କି ହାର ସେ ବକ୍ଷ ଆକାଶେ,
ଭର୍ଗସମାଧି ଭଙ୍ଗ କରିବ, ଭଲେ ଏହା କରକମଳ ବଂଶୀରବ,
ଭୂମଣ୍ଡନା ରେ,
ଭୂତଭୁକ-ବିପକ୍ଷ—ପ୍ରକ୍ଷ୍ୱେଡ଼ନରୁ ତୀକ୍ଷ,
ଏ କିଶୋର କଟାକ୍ଷ, କନକାଚଳ ବକ୍ଷ
କେବଳ ଏହା ଲକ୍ଷ୍ୟ, ସଖି ରେ, କହ ବିଶ୍ୱେ ସତେ
ଯୁବତିଧୃତି କେତେ ? ।୩।

ଭାଷିଲେ ଅଷ୍ଟଦୁର୍ଗ-ସ୍ଥିତ କପଟ ସ୍ୱର୍ଗ-ମଘାବା,—
ଏ ଶୃଙ୍ଗାର ସୁଧା-ବରଷୀ ମେଘ ବା;
ଛତ୍ୟପଣରେ ହେଲେ ଏହାର ଭୁଜ ଭୁଜଗେନ୍ଦ୍ର କରନ୍ତା କଣ୍ଠେ ହାର
ଭୂମଣ୍ଡନା ରେ ;
ଭଜଥାନ୍ତା ରଜନୀ, ଦିବସେ ପିକଦାମୀ,
ଖଟି ଏ କୃପା ଯେନ ; ସାର୍ଥ ହୁଅନ୍ତା ଜନ,
ସତେ ଜଳଜଯୋନ, ସଖି ରେ, କରିବେ ଅନୁଗ୍ରହ ;
ଏ ମୋହନ ବିଗ୍ରହ ।୪।

— — —

( ରାଗ - କେଦାର ଗୌଡ଼ା । ତାଳ - ତ୍ରିପୁଟା )

## — ଗୀତକଥା —

**ଲଳିତା କହୁଚଲେ** :—ଜୀବନ-ସଙ୍ଗିନୀ, ମାଳ-ସର୍ପିଣୀ ପରି ଦେଖାଯାଉଥିବା ଶ୍ରୀକୃଷ୍ଣଙ୍କର ଭ୍ରୂଲତା ଭଙ୍ଗିକୁ ଚାହାଁ ।

୧—ସଖି ! ଏହାଙ୍କୁ ଦେଖି ମନୁଷ୍ୟର ଆଖିର ଜନ୍ମ ସାର୍ଥକ ହେଲା । ତୁ ସଖୀ, ଆଉ ଏ ରୂପକୁ ଦେଖି ମଦନ ବାଣରେ କାତର ହୋଇ ପଡ଼ନାହିଁ । ମୋ ଗଳାରେ ତୋ ହାତକୁ ଫାଶ କରି ଛନ୍ଦି ଦେଇ, ଆଉ ଭୂଇଁ ଉପରେ ଦମ୍ଭ କରି ପାଦକୁ ରଖି ଛିଡ଼ାହୁଅ । ରେ ଭ୍ରୂମଣ୍ଡନା, ଶ୍ରୀମୁଖ ଚନ୍ଦ୍ରମା କେଡ଼େ ସୁନ୍ଦର ଦିଶୁଅଛି । ଚୂର୍ଣ୍ଣ କୁନ୍ତଳ ତଳର ଅଖଣ୍ଡ ଗୋରଚନା ତିଳକକୁ ଆଖିପକା । ଗନ୍ଧମନ୍ତ ସୁନ୍ଦର ମୟୂର-ଚୂଳ କେଡ଼େ ମନୋହର ଦିଶୁଚି, ଅନା ।

ନବ ଅରୁଣ ତେଜକୁ ବଳି ଗଣ୍ଡରେ ଥିବା କୁଣ୍ଡଳ ଦୁଇଟିକୁ ଦେଖିଲେ ବିବେକ ହଜିଯାଏ । କମନୀୟ ଅଧରକୁ ଚାହିଁଲେ ସୁଖ-ଦାୟକ ସର୍ବଶ୍ରେଷ୍ଠ ମାଣିକ୍ୟ ବୋଲି ଭ୍ରମ ଜାତ ହେଉଛି । ସଖି ! ଏ ସବୁକୁ ଦେଖିଲେ ସତ୍ତ୍ୱ ସ୍ତ୍ରୀ ହେଲେ ମଧ ତାର ଧୈର୍ଯ୍ୟ ଏକାବେଳେ ନଷ୍ଟ ହୋଇଯିବ । ରେ, ଭ୍ରୂ-ମଣ୍ଡନା, ତୁ ଶ୍ୟାମର ଅଙ୍ଗ ସଙ୍ଗ ନ-ମନାସି କେବଳ ଶ୍ରୀଅଙ୍ଗ ଶୋଭାକୁ ଅନା । ସଖି ! ତାଙ୍କ ନେତ୍ର ତୋ ଅଙ୍ଗଚୂମ୍ବନ ନକରୁ । ୨ ।

ସଖି ! ତ୍ରିଭଙ୍ଗ ଠାଣିରେ ଉଭା ହୋଇ ଶ୍ୟାମ କେଡ଼େ ମନୋହର ଦିଶୁଚନ୍ତି, ଅନା । ଶ୍ରୀକରରେ ଶୋଭାପାଉଥିବା ବଂଶୀର ସ୍ୱନ, ମହାଦେବଙ୍କ ପରି ଯୋଗୀର ଧ୍ୟାନକୁ ମଧ ଅକ୍ଲେଶରେ ଭଙ୍ଗ-କରିଦେବ । ଆରେ, ଭ୍ରୂ-ମଣ୍ଡନା, ଏଇ ନବକିଶୋରଙ୍କ ବାଙ୍କ-ଚାହାଣୀ କନ୍ଦର୍ପ-ଶରରୁ ମଧ ଆହୁରି ତୀକ୍ଷ୍ଣ । ସଖି ! ଥରେ ବିଚାରି କହିଲୁ ଏହା ନିକଟରେ ଯୁବତୀର ଧୈର୍ଯ୍ୟ କି ସ୍ଥିର । ୩ ।

ଆଠଗଡ଼ ରାଜା କହୁଚନ୍ତି, ଶ୍ରୀକୃଷ୍ଣଙ୍କର ଏ ରୂପ ଦେଖି ମନେ- ହୁଏ ସତେ କଅଣ ଏହା ଶୃଙ୍ଗାର ରୂପକ ସୁଧା-ବର୍ଷନ୍ତ ମେଘ କ ? ଯେବେ କେହ୍ନ ଯୁବତି ଦାର୍ଘୀପଣରେ ସୁଦ୍ଧା ଏହାଙ୍କ ଭୁଜଙ୍ଗ-ବାହୁକୁ ତାର କଣ୍ଠଦେଶରେ ହାର କରିପାରନ୍ତା ଆଉ ଏହାଙ୍କର ପିକଦାନ- ଧରି ଭୃତ୍ୟ ହୋଇପାରନ୍ତା, ତେବେ ସେ ଆପଣା ଜନ୍ମକୁ ସାର୍ଥକ ମନେକରନ୍ତା । ସତେ କ'ଣ ବିଧାତା, ଏ ମୋହନ ବିଗ୍ରହକୁ ପାଇବାଭଳି ଅନୁଗ୍ରହ କରିବେ ? । ୪ ।

କୁଳାଙ୍ଗନାଧୈର୍ଯ୍ୟବ୍ୟୟକରଣ ଧୂର୍ତ୍ତସ୍ମିତଲୋବୋ
ଦଧନ୍ନୀପାଭ୍ୟାସେ ଭୁବନନୟନା ସେଚନକତାଂ ।
ହରିଃ ସାନ୍ଦ୍ରଂ କାଳାମ୍ବୁଦନବତମାଲାଗମରୁଚିଃ,
କୃତଶ୍ରେଣିନ୍ୟାସଂ ଗତନମିଷସ୍ଥା ସଂପିବ ଦୃଶା ॥

ଇତ ବଙ୍କାପ୍ୟ ଗ୍ରଧାଙ୍ଗସୌରଭଲଲବ୍ଧାନଙ୍ଗମଙ୍ଗଲ-ସଙ୍ଗୀତମଧୁ- କରନିକରବକାଗ୍ରସ୍ଥବଲାସମ୍ପୂର୍ଣ୍ଣନକୁଞ୍ଜପୁଞ୍ଜ ଆସ୍ୱାଦ୍ୟଂ ହରେର୍ଲେ ଚନ- ଗୋଚରୀକୃତ୍ୟ କୁସୁମନଚସ୍ଥାବଚସ୍ଥସମୁଦ୍ୟମାଭନସ୍ୱେନ ତତୋ ଲଢକା- କାନ୍ତରଂ ପ୍ରତ ଚଳତାସ୍ଥାଂ ଲଳତାସ୍ଥାଂ—

**ଅର୍ଥ :—**

ଲଳିତା କଣୋଗି ଲେ,
ମଧୁ ମନ୍ଦ ହସି ଯେହୁ
ଗୋପକୁଳବାଳା ଧୈର୍ଯ୍ୟ,
ଅବହେଳେ କରିପାରେ ଲୋପ,
ନବ ନୀଳ ଘନରୁଚି —
ତମାଳ-ବରଣ ସେହ୍ନ ଶ୍ୟାମ,
ବିଶ୍ୱଜନ ନୟନ-ରଞ୍ଜନ ଛବି ଧରି,
ବଜେ ସଖି କେଳିକଦମ୍ବର ମୂଳେ,

ନୟନ ପୁରାଇ ଦେଖ ।
ଅପଲକ ନୟନେ ଗୋ,
ପାନ କର ରୂପ-ସୁଧା ଧନ !
କହୁ ଏତେ,
ଫୁଲତୋଳା ଛଳ କରି
ଚଳିଲେ ଲଳିତା ଆନ ଲତିକା ସମୀପେ ।
କୁଞ୍ଜେ ଏକା ରହିଲେ ଶ୍ରୀମତୀ ।
ଧନ୍ୟ ଅଙ୍ଗ-ସଉରଭେ
ଆକୃଷ୍ଟ ଭ୍ରମର କୁଳ
ଆରମ୍ଭିଲେ ତହୁଁ
ଏକାଳରେ ଦକ୍ଷିଣ ଅନଳ
ପ୍ରସରିଲା ମନ୍ଦ ମନ୍ଦ କଦମ୍ବ କାନନେ ।
କାମ ସନ୍ଦୀପକ ସବିଳାସ ମଙ୍ଗଳ ସଂଗୀତ ।

---

## 'ମ'

### ଅନୁଚନ୍ତା

**ମହୁତ ବଟାଇ ମକରନ୍ଦ କଣା ବାଣ୍ଟିଲ ଫୁଲ-ନାଗରୀ,**
**'ମନ୍ଦ' 'ମନ୍ଦ' ବୋଲି କୋଇଲି ଡାକୁଅ ତା' ଦେଖି ପକାଏ ହୁରି ।**
**ମଧୁକର ମଧୁ-ଗୁଞ୍ଜରଣେ ପୁଣି ମାଧୁକରୀ ଆରମ୍ଭିଲା,**
**ମୋହନୀ-ମୋହନ ମିଳନେ ମଙ୍ଗଳ ଶଙ୍ଖ ଧ୍ୱନି ଅବା କଲା !**

## — ଗୀତ —

ମଧୁରେ, ମନ୍ଦ ମନ୍ଦ ବହାଇ ଗନ୍ଧବହ ପ୍ରସରିଲା କଦମ୍ବ ନିକୁଞ୍ଜସୀମାରେ,
ମରନ୍ଦ ସେକେ ଚମକି ଲୋକେ ଭାଷିଲେ ଇଷି ମା ରେ,
ମିଳିନ୍ଦ ଲତା ଦନ୍ତବନିତା ବଦନେ ମିଶି ମାରେ,
ମଣ୍ଡିତହେଲା ସେ ବନସ୍ଥଳ, ମହାରଜତ ମହେନ୍ଦ୍ର ମାଳ-
ମୟୂଖ ଶିଖାମୟ ମଞ୍ଜୁଳ ବାସର ସୁଷମାରେ । ପଦ ।
ମିଶିଲା ଚକୋରଲୋଚନ ବାଳା- ରୁଦ୍ଧ ମଦନୁ ଲଭି ଲହରି
ମିଳିଲା ଶ୍ୟାମ ଗଉର ଦୁଇ ମହ,
ମଧୁପ ଯୁବା ଲଭିଲା ଅବା ନବ ସରସୀରୁହ,
ମାନସ ଅଙ୍ଗଭେଦ ପ୍ରସଙ୍ଗ ଭଙ୍ଗ ରଚିଲା ସ୍ନେହ ;
ମଣ୍ଡଳଗଲା ଶେଷ ସାତ୍ତ୍ୱିକ ମୃଡନୟନ ସଂଖ୍ୟକ ଯାକ
ମଜ୍ଜାଇ ଦେଲା ଦୁହିଙ୍କ ମନ ମହାମୋଦପ୍ରବାହ । ୧ ।
ମଦଦ୍ୱିରଦ-ମଥିତହ୍ରଦ, ମୂର୍ଚ୍ଛିତ ମହୋତ୍ପଳ ଆମୋଦ,
ଫୁଲ୍ଲପରାଗ ଶ୍ରୀଅଙ୍ଗରାଗ ବାସ,
ମୃଗଲାଞ୍ଛନ ମରୀଚି ଚୂର୍ଣ୍ଣ ଧାବଲ୍ୟ ପରକାଶ,
ମଧୁମାଦକ-ଗୁଣ-ସୂଚକ କୋକିଳ କଳଘୋଷ,
ମଣି ମଣ୍ଡିତ କଙ୍କିଣୀଯୁତ ମଞ୍ଜୁ ମଞ୍ଜୀର ଭୂଷାଶିଞ୍ଜିତ
ରସନା ରଣତ୍କାର ଶ୍ରବଣ କଲା ବିବେକ ମୋକ୍ଷ । ୨ ।
ମଧୁ ମଧୁର ବଧୂ ଅଧର କଠୋରବର ରଦନାମ୍ବର,
ବିମ୍ବ ଚୁମ୍ବନ ଚୁକୃତ ସ୍ତନମେଳା,
ମୃଦୁ ମନ୍ଥନ ଧ୍ୱନି ଜନନ କଲାଟି କ୍ରୋଡ଼ଖେଳା,
ମହେନ୍ଦ୍ର ମଣି, ବଳୟ ଶ୍ରେଣୀ ରଚିଲା ହୋଇ ଲୋଳା,
ମଦନାଙ୍କ ବୃନ୍ଦ ପୀୟୂଷମୟ, ମିଶ୍ରିତ ହେଉ ହେଉ ସମୟ
ମାର୍ ମହାସ୍ତ୍ର ଗଲ୍ କି ନାହିଁ ହେଲା ହଂସପୁବୋଳା । ୩ ।

ମନ୍ଦାର ବନ ସେ ବନ ରଚା- ଚନ୍ଦେ ରଚିଲ୍ ସୂନ ବରଷା
ରସିଲେ ସର୍ବ ଗନ୍ଧର୍ବମାନେ ଗାନେ ;
ମାତ୍ତ ତାଣ୍ଡବ ରଚିଲେ ଦେବଦାସୀଏ ସାବଧାନେ,
ମର୍ଦ୍ଦଳ ଘୋଷ ହେଲା ତ୍ରିଦଶ ମଣ୍ଡଳେ ସବୁସ୍ଥାନେ,
ମୁକତ ପ୍ରାପ୍ତ ହେଲ ତ୍ରିଲୋକ- ମାନସୁ ମ୍ଳାନ କଲେ ପାଠକ
ଶ୍ରୀ ଜଗଦ୍ଦେବ ହରିଚନ୍ଦନ ସେ ମହୋତ୍ସବ ଧ୍ୟାନେ । ୪ ।

(ରାଗ-ମାରୁଆ । ତାଳ—ତ୍ରିପଟା ।)

---

## — ଗୀତକଥା —

ବସନ୍ତ ସମାଗମ ହେଲ୍—

କଦମ୍ବବନ ସୀମାରେ ଧୀରେ ଧୀରେ ମଳୟ ବହିଲା । ଫୁଲରୁ ମକରନ୍ଦ ଝରିବାର ଦେଖି, ଲୋକ କାମ ବିଭୋରହୋଇ ଚମକ୍କ 'ଇଷି ଇଷି' କହିଲେ । ଭ୍ରମରମାନେ ଗର୍ବିତା ନାଗରୀ ରୂପିଣୀ ଲତିକାର ମୁଖରେ ମିଶିଗଲେ । ଶ୍ରୀମତୀଙ୍କର ସୁନାଶିରୀ ଓ ଶ୍ରୀକୃଷ୍ଣଙ୍କର ଇନ୍ଦ୍ରନୀଳମଣି ତେଜର ସଞ୍ଚାର ଜନିତ ସୁଷମା ବନ-ସ୍ଥଳରେ କଳିକା ମଣ୍ଡିଦେଲ ପରି ଶୋଭା ପାଇଲା । ଘୋଷା ।

୧— କନ୍ଦର୍ପପୀଡ଼ାରେ ନାଗର ହୋଇ ଶ୍ୟାମ ଓ ଶ୍ରୀମତୀଙ୍କର ଗୁରି ଗୋଟି ନୟନ କମଳ ଏକତ୍ର ହେଲା । ଶ୍ୟାମ ଓ ଗୌର ଦୁଇଟି ତେଜ ଏକାଠି ମିଶିଗଲା । ସତେ ଅବା ଯୁବକ ଭ୍ରମର ନବୀନା କମଳିନୀର ସଙ୍ଗଲାଭ କଲା । ସ୍ନେହ ବଳି ପଡ଼ିବାରୁ ମନ ଓ ଦେହ ଦୁହେଁ ଅଭିନ୍ନ ହୋଇ ଆପଣା ଆପଣା ପାର୍ଥକ୍ୟ ପାଶୋରି ଦେଲେ । ସାତ୍ତ୍ୱିକ ଭାବର ଶେଷ ତିନଗୋଟି ବିଭାଗ ଅର୍ଥାତ୍ ବିବର୍ଣ୍ଣତା, ଅଶ୍ରୁ

ଓ ମୂର୍ଚ୍ଛା ଏ ତିନୋଟିଯାକ ମଳିନ ହୋଇଗଲେ । ବାକି ପ୍ରଥମ ପାଞ୍ଚଗୋଟି ଅର୍ଥାତ୍ ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ ଓ କମ୍ପନ ପ୍ରବଳ ହୋଇ ଉଠିଲା । ଦୁହିଁଙ୍କ ମନ ମହାଆନନ୍ଦ ପ୍ରବାହରେ ଆନ୍ଦୋଳିତ ହୋଇ ଉଠିଲା ।

୨—ମତ୍ତହସ୍ତୀ ଦଳି ଦେଇଥିବା ହ୍ରଦରେ ଫୁଟିଲା ପଦ୍ମର ପରାଗ ସୁବାସ ସହିତ ମିଶି ଚଉଦିଗରେ ବିସ୍ତୃତ ହୋଇ ପଡ଼ିଥିବା ପରି ଶ୍ରୀକୃଷ୍ଣ ଓ ଶ୍ରୀମତୀଙ୍କର ପ୍ରେମ-ମିଳନ କାଳର ଅଙ୍ଗ ସୌରଭ ଚତୁର୍ଦ୍ଦିଗରେ ଚହଟିଗଲା । ଏତିକିବେଳେ ଚୂନପରି ଧଳା ଚନ୍ଦ୍ର-କିରଣ ପ୍ରକଟି ଉଠିଲା ! କୋଇଲି କୁହୁକୁହୁ ଡାକି ବସନ୍ତର ମାଦକତା ପ୍ରକାଶ କଲା । ମଣି ମଣ୍ଡିତ କିଙ୍କିଣୀର ନାଦ ନୂପୁର ଧ୍ୱନି ସହିତ ମିଶି ମଧୁର ସ୍ୱର ସୃଷ୍ଟିକଲା । ତହିଁ ସହିତ ଚନ୍ଦ୍ର-ହାରର ରଣଝଣ ଶବ୍ଦ ବିବେକକୁ ଲୋପ କରିଦେଲା ।

୩—ଶ୍ରୀମତୀଙ୍କର ମଧୁରାଧର ଶ୍ରୀକୃଷ୍ଣଙ୍କ ଅଧର ସହିତ ମିଶି ଏକାଠି ଚୁମ୍ବନ ଶବ୍ଦ ସୃଷ୍ଟିକଲା । ଶ୍ରୀକୃଷ୍ଣଙ୍କ କୋଳରେ ଶ୍ରୀମତୀଙ୍କର କ୍ରୀଡ଼ା କାଳରେ ଇନ୍ଦ୍ରନୀଳମଣି ନିର୍ମିତ ବଳୟମାନ ଇତସ୍ତତ ହୋଇଗଲା । ତହିଁରୁ ଅବ୍ୟକ୍ତ ମଧୁର ଧ୍ୱନି ଜାତ ହେଲା । ଦୁହିଁଙ୍କର ମନୋହର ଚାଟୁବାକ୍ୟ ଏକାଠି ମିଶିଗଲାବେଳେ କନ୍ଦର୍ପର ମହତ୍ତ୍ୱ ଆଉ ରହିଲା କି ନାହିଁ ବୋଲି ମନରେ ସନ୍ଦେହ ଆସିଲା ।

୪—ଏତିକିବେଳେ ସେଇ ବନରେ ସ୍ୱର୍ଗରୁ ପୁଷ୍ପ ବୃଷ୍ଟିହେଲା । ଗନ୍ଧର୍ବମାନେ ସଙ୍ଗୀତ ଆରମ୍ଭ କଲେ, ଦେବଦାସୀମାନେ ସଂଯତ ହୋଇ ନୃତ୍ୟକଲେ । ଚାରିଆଡ଼େ ମର୍ଦ୍ଦଳ ଧ୍ୱନିତ ହେଲା । ତିନି ଲୋକର (ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର) ଲୋକେ ପ୍ରକୃତି ଏବଂ ପୁରୁଷଙ୍କର ମିଳନରେ ପାପମୁକ୍ତ ହେଲେ । ସେହି ମହୋତ୍ସବ ଧ୍ୟାନ କରି ରାଜା ଜଗଦ୍ଦେବ ହରିଚନ୍ଦନଙ୍କ ମନରୁ ପାପ କ୍ରମଶଃ ଦୂରୀଭୂତ ହେଲା ।

## ଶ୍ଳୋକାଂଶ

ପ୍ରପଞ୍ଚକାନ୍ଧତମସାନ୍ଧୁ ପିଚଣ୍ଡପାତାତ୍
ପ୍ରାୟଃ ସମାକୁଳବିବେକଦୃଶାଂ ଜନନାଂ ।
ଋମୀକରପ୍ରକରପୀତମୟୂଖଲେଖା,
ନୀଳୋପଳାଂଶୁମୟୁମସ୍ତୁ ବିନାୟୁ ତେଜଃ ।

ଶିଶୁପଦ୍ମକ୍ରିଷିପ୍ତାଂ ମାଳାମିବ, ଶାଣୋଲ୍ଲୀଢ଼ାଂ ମଣିମିବ, ତମସା-ତ୍ରସ୍ତ ଗଳିତାଂ ଚନ୍ଦ୍ରକାମିବ ; ଗଜେନ୍ଦ୍ରକଳଡୋଳହ୍ଲିତାଂ ସରୋଜମୀମେବ, ମୃଗନ୍ଦ୍ରେଗ୍ରହ୍ରାତମୁକ୍ତାଂ ମୃଗୀମିବାନଙ୍ଗସଙ୍ଗରରଙ୍ଗମଙ୍ଗଳ-ମହୋତ୍ସବାଡଶଯ୍ୟାୟୁସ୍ତା ଭୂୟୁସ୍ତାମଙ୍କମାରୋପ୍ୟ କୃଷ୍ଣଃ ।

**ଅର୍ଥ :—**

ସ୍ୱର୍ଣ୍ଣପ୍ରଭ କଶୋଷ କରଣମାଳା,
ପୁଣି,
ନୀଳ କମଳ-ନନ୍ଦିତ
ଶ୍ୟାମ ଅଙ୍ଗତେଜ,
ମୋହାନ୍ଧ-କୂପରୁ
ରକ୍ଷାକରୁ ସଂସାରୀ ଜନରେ ;—
ଯାହାଙ୍କ ବିବେକ ଦୃଷ୍ଟି
ଘନାବୃତ ଘୋର ଅନ୍ଧକାରେ ।
ବାଳକର—
କଣ୍ଠଦେଶ ପରେ ଫୁଲମାଳ ଫିଙ୍ଗାପରି,
ଶାଣଘଷା ମଣି ସରି ଅବା,
ରାହୁମୁକ୍ତ ଚନ୍ଦ୍ରମା ଯେସନ,
କିବା, ମଦମତ୍ତ କରୀ-ଦଳା

ପଦ୍ମବନେ ଉପେକ୍ଷିତ
ପଦ୍ମନାଳ ସର,
ଅଥବା ହରଣୀ ସମ ;—
ଉଧ୍ୱର ଯେ ଆସିଅଛୁ ସିଂହର କବଳୁ ;
ସେହ୍ନ ମତି ସେହ୍ନମତ ରତ୍ତ-ପ୍ରାନ୍ତେ
ଶ୍ରାନ୍ତା କଶୋଗୀରେ
ଅଙ୍କରେ ବସାଇ ଶ୍ୟାମ
ସମ୍ଭାଷିଲେ ମଧୁ :—

'ଯ'

— ଅନୁଚନ୍ତ୍ରା —

ଯାମିନୀ ମାତର ପରମାୟୁ ତାର କେତେ କାଳ ଅବା ସତେ,
ଯାତେ କାଳର ଯତନ ସାଇତା ସ୍ୱଭ କ ସଭବ ଯେତେ ?
ଯୋଗାଇ ଜାଣେ ସ୍ୱ ମାନସ କିଶୋର ବଶୋର ଆପଣା ପଣ,
ଯଦ୍ୱବନ ଯା'ର ଚରଣେ ଶରଣ ବଖାଣିଲେ ତାର ଗୁଣ :—

— ଗୀତ —

ଯୋଷାବର ରେ, ଯଥାର୍ଥରେ ଜାଣ ମୁଁ ତୋହର ରେ,
ଯାମଳଭୂଧରନଭପୟୋଧର ମରଦନଆ ଗୃକର ରେ । ପଦ ।
ଯାବକ ତୋ ପଦକଞ୍ଜର ସମଦଗଜଗତ ମୋ ଶେଖରରେ,
ଯଶୀନ୍ଦ ସମାଧି-ଖଣ୍ଡନ ତୁ ନାଧି, ମୁଁ ରଙ୍କମାନଙ୍କ ବର ରେ । ୧ ।
ଯମକ କ ତୁହ୍ନ ପୂର୍ଣ୍ଣଚନ୍ଦମୁହିଁ ! ମୋ ମହାଶୁଭ ଦଶାର ରେ ।
ଯନ୍ତେ ସମ୍ପାଦବା ଚନ୍ତାମଣି ଅବା ମୋ କରେ ହେଲୁ ସୁହାରରେ ।୨।



"ପଉ୍‌ବନ ଯାର ଚରଣେ ଶରଣ ବଖାଣିଲେ ତାର ଗୁଣ"

—ଶ୍ରୀକୃଷ୍ଣ

ଯୁବଣି କଦମ୍ବରାଜା ଅବଲମ୍ବ ହୋଇଲୁ ଯେବେ ନକର ରେ,
ଯୁଦ୍ଧକୁ ସନ୍ନଦ୍ଧ ହେଉ ଅତି କ୍ରୁଦ୍ଧ ହୋଇ ଏବେ ପଞ୍ଚଶର ରେ ।୩।
ଯମୁନାବାହନୀ ତଟରୁହବନୀ ଅବନୀ ବନାଇବାର ରେ ।
ଯଶ ରଖି ନନ୍ଦା ପଟଳୀରୁ ବୃନ୍ଦା କରାଇଲା ତ ନବାର ରେ । ୪ ।
ଯଶୋଦାକୁମର ଗିରେ ରାଧା ଶିର ନୁଆଁଇଲେ ଲଜ୍ଜାଭର ରେ ।
ଯୁଗଳ ବିଗ୍ରହ କର ଅନୁଗ୍ରହ ଅଷ୍ଟଦୁର୍ଗ ପୁରନ୍ଦର ରେ ॥
(ରାଗ ମୁଖାରୀ । ତାଳ ଆଠତାଳ ।)

---

## — ଗୀତକଥା —

ନାଗରୀ-ମଣ୍ଡନା ! 'ମୁଁ ତୋହର' ଏକଥା ନିଶ୍ଚିତ କରି ଜାଣ । ଯାଉଁଳ ପର୍ବତ ପରି ଦେଖାଯାଉଥିବା ତୋର ଉଚ୍ଚ କୁଚ ଯୁଗଳର ମର୍ଦ୍ଦନକାରୀ ଗୁକର ବୋଲି ମୋତେ ହେନାକର । ଘୋଷା ।

୧ — ଆରେ ମତ୍ତଗଜ ଗମନା, ତୋ ପାଦତଳର ଅଳତା ମୋ ମଥାର ଭୂଷଣ ପରି । ଯୋଗୀ-ଯୋଗ-ଭଙ୍ଗିନୀ ! ତୁ ଅମୂଲ୍ୟ ନିଧି, ମୁଁ ଅତିଦରିଦ୍ର ଅଟେ ॥

୨ — ରେ ଚନ୍ଦ୍ରବଦନା, ତୁ ମୋ ମହା ଶୁଭଦଶାର ପୁନରାଗମନ କି ? ଅଥବା ହାତରେ ମୋର ଅତି ଯତ୍ନରେ ସାଇତା ଅମୂଲ୍ୟ ମଣି ମୋତେ ଦେଇପକାଇଲୁ କି ? ॥

୩ ଆରେ ନାଗରୀରାଜା ! ମୁଁ ତୋର ଆଶ୍ରୟ ପାଇପାରିଲି — ଏତକ ଜାଣିପାରି ମୁଁ କନ୍ଦର୍ପ ସହିତ ଲଢ଼ିବା ପାଇଁ ପ୍ରସ୍ତୁତ ଅଛି । ଏଣିକି ସେ ଲୁହାର ସାଞ୍ଜୁ ପିନ୍ଧି ଆସିଲେ ମଧ୍ୟ ମୁଁ ତାଙ୍କୁ ଖାତିର କରୁନାହିଁ ॥

୪—ସହଚରୀ ବୃନ୍ଦା ଯମୁନା କୂଳର ଏହି ବନକୁ ଲୀଳାସ୍ଥଳରେ ପରିଣତ କରିଛି ନନ୍ଦାକୁ ଏଡ଼ାଇ ସତରେ ଏକା ଯଶ ରଖିଦେଲା ।

୫—ରସରାଜ ଶ୍ରୀକୃଷ୍ଣଙ୍କର ଏହିପରି କଥାରେ କିଶୋରୀ ରାଧା, ଲାଜରେ ମଥା ନୁଆଁଇ ଦେଲେ ।

ରାଧାକୃଷ୍ଣ ଯୁଗଳ ଆଠଗଡ଼ର ରାଜାଙ୍କୁ ଅନୁଗ୍ରହ କରନ୍ତୁ ।

### ଶ୍ଳୋକାଂଶ

ଅଦ୍ୟପ୍ରଭୃତ୍ୟନଲସେନ୍ଦୁ ସହୋଦରାସ୍ୟେ,
ଦାସ୍ୟେ ଭବାମ୍ୟହମହର୍ନିଶମେବ ଯୁକ୍ତଃ ।
ଆଗୋ ଲତା ନ ଗଣୟତ୍ୟକୃଶଂ ଯଥାଲେ-
ର୍ବାଲେ ମମ ତ୍ୱମପି ତନ୍ନ ସତତଂ କ୍ଷମସ୍ୱ ॥

ଇତ୍ଥଂ ପ୍ରତ୍ୟଙ୍ଗଚମ୍ପୋଜସ୍ତବର୍ଣ୍ଣୋଚ୍ଛଳିତଚମ୍ପକାରତମନ୍ତ- କରଣେ ମଚନ୍ଦଲସ୍ତନ୍ଦ୍ରପଟ୍ଟିମାନୋପସୃଷ୍ଟିବୈମ୍ବ ଦୂଭ୍ଙ୍ଗତନୈବେଲାଞ୍ଚଳ- ବଂଳନଗାଜନୈଷ୍ଟାସନ୍ନାବସାନାସ୍ୱାଂ କ୍ଷଣଦାସ୍ୱାଂ ମଞ୍ଜୁଳକେଳିମଞ୍ଜରୀ ଜଳସ୍ତଦ୍ୱାର ଜଳାସ୍ତ କାଚତ ବ୍ରଜଦେବୀ ।

**ଅର୍ଥ :—**

ଶ୍ରୀକୃଷ୍ଣ—ପୂର୍ଣ୍ଣଚନ୍ଦ୍ର ମୁଖୀ ରେ ସୁନ୍ଦରି,
ଆଜଠାରୁ ହେବ ମୋତେ
କୋଷୁର ମୁଁ ତୋର ନଶିଦିନ ।
ଲତା ଯଥା ଅପରାଧ ନ ହେନଇଁ
ମଧୁଲିଟ ଭ୍ରମର-ଚୁମ୍ବନେ,
ନବୀନା କିଶୋରୀ !
ସେହିମତ —
ସେହି ମତ କ୍ଷମିବୁ ଲୋ, ଅପରାଧ ମୋର ।
ଚୁମ୍ବନର ଚୁଁ କାର ଶବଦେ ମୋହନର ।

ଜାତହେଲା ଆନନ୍ଦ ଅପାର ।
କହୁ କହୁ ଗୂଢ଼ କଥାମାନ,
ପର୍ଯ୍ୟନ୍ତରେ ଦେଇ ଦେଇ ବାହୁ,
ପ୍ରଭାତିଲା ସୁଖ ନିଶି ।
ଏହି କାଳେ
ମଞ୍ଜୁ କେଳିକୁଞ୍ଜ ଦ୍ୱାରପଟେ
ଆଡ଼େ ଆଡ଼େ ରହି କେହି
ବରଜ ଲଳନା
ଚେତ ଦେଲା ଚତୁର୍ଥ ଭାଇରେ ;

---

**"ର"**

**ଅନୁଚକ୍ର**

**ରଚିଲ କଳଲପାଢ଼ଆ ସ୍ୱେଷେ କ ରଜମରେ କଣ ନାଶ**
**ରସିକା ବରଷେ, ସୁଖ ନିଶି ଶେଷେ ସଜାଙ୍ଗଲା ବେଶ ବାସ,**
**ରହ କୁଞ୍ଜଦ୍ୱାରେ ସଜନ ଚେତାଏ ଏ କି ଲଜ କଥା ସତେ ?**
**ରଢ ସାବ ମାଢ ସୁରତେ, ନିଅଣ୍ଟ ଦେଲ କ ଗୋ, କାଲ ତୋତେ !**

**— ଗୀତ —**

ରସାଳସା ରେ । ରସି ପୁଣି ଏ କି ଲୋକହସା ରେ । ପଦ ।
ରକ୍ତିମା ଚୁମ୍ବିଲା ଇନ୍ଦ୍ର ଆଶାରେ,
ରାଜୀବେ ପ୍ରଫୁଲ୍ଲ ହେଲେ କାହାରେ । ୧ ।
ରତନାଥ ସମର ପ୍ରଶଂସାରେ,
ରମଣୀ କେ ନ ରସନ୍ତି ସଂସାରେ । ୨ ।
ରସନ୍ତି ରସିକେ ଯିନା ନିଶାରେ,
ରଜମା ଶେଷରେ ଏ କି ଦଶାରେ । ୩ ।

ରମଣୀଯୂ ହେମକୁ ସୁଦୃଶା ରେ,
ରଖିଲୁ କେଡ଼େ ନବଢ଼େ ମସାରେ । ୪ ।
ରହୁ ନା ଅଯଶ ଆଉ ରସାରେ,
ରସାରୁହରୁ ଲତାକୁ ଖସା ରେ । ୫ ।
ରାଜା ଅଷ୍ଟଦୁର୍ଗରେ ଏ ଭାଷାରେ,
ରଚେ ଏବେ ବଜେ ହେଉ ସୁହାଚରେ ।
( ରାଗ—ଆଶାବରୀ । ତାଳ—ଆଠତାଳ । )

## — ଗୀତକଥା —

ରସାଳସା, ଏ କେମିତ କଥା ? ରସରେ ମାତ, ପୁଣି ଏମିତ ଲୋକହସା ହେବାଟା କ'ଣ ସୁନ୍ଦର ହେଉଚ ?

୧ । ପୂର୍ବମେଘରେ ସିନ୍ଦୂର ଫାଟି ଆସିଲାଣି, ପୋଖରୀରେ ପଦ୍ମ ଫୁଟିଲାଣି ।

୨ । ସଂସାରରେ ଏଭଳ କେଉଁ ରମଣୀ ଅଛୁ, ଯେ କ ରତକ୍ରୀଡ଼ାରେ ବଜୟିନୀ ହୋଇ କାମଦେବଙ୍କୁ ପ୍ରଶଂସା ନକରେ ?

୩ । ହେଲେ, ରାତରେ ସିନ ରସିକମାନେ ରସରେ ମାତନ୍ତି, ରାତ ପାହାନ୍ତାରେ ପୁଣି ଏ କ ଦଶା ? ସକାଳ ହେଲା, ଏବେ ସୁଦ୍ଧା ତୋ ରଙ୍ଗରସ ଭୁଟୁନ ନାହିଁ ?

୪ । ଗୃରୁନେନ୍ତ୍ରା ! ସୁନା ଭିତରେ ସିନା ଇନ୍ଦ୍ରନୀଳମଣି ବସେ, ତୁ ତୋ ସୁନା ଦେହକୁ ନେଇ ନୀଳମଣି ଶ୍ରୀକୃଷ୍ଣଙ୍କ ମଧ୍ୟରେ ଟାଣିକର ବସାଇ ଦେଲୁ , କେମିତ ଭଲ ?

୫ । ଜଗତରେ ଅପବାଦ ରଟାନା ଆଉ, ତୋ ଅଙ୍ଗଲତାକୁ ଶ୍ରୀକୃଷ୍ଣ ରୂପୀ ତରୁରୁ ଏବେ ଖସାଇ ଦେ ।

୬ । ଆଠଗଡ଼ର ରଜା କହୁଛନ୍ତି :—ଏଥର ଭୁନ ହୋଇ ଭଲେ ଭଲେ ଗୁଳିଆ ।

### ଶ୍ଳୋକାଂଶ

**ଅନାଦୃତ୍ୟାଲୀନାଂ ପ୍ରିୟବଚନମାଲାମକଠିନାମ୍,**
**ହଠାତ୍ତୁ ପ୍ରେୟଃଶ୍ରଙ୍କାର୍ଗଳନବତ୍ତଭୁଞ୍ଜାପି ସଖି ଚେତ୍ତୁ ।**
**ଇଦାନୀମପ୍ୟାସ୍ୱ ବଦନମବନମ୍ଭୁଷାଙ୍ଘ୍ରିଂ ସୁପମେ,**
**ଯଥାଭୂସ୍ୱାଦ୍ ଯତ୍ନାନ୍ କୁରୁ କୃଶସପତ୍ନ୍ୟାସ୍ୟହସିତମ୍ ॥**

**ତତସ୍ତଦାକର୍ଣ୍ଣ୍ୟ କର୍ଣ୍ଣାଭ୍ୟର୍ଣ୍ଣଚୁମ୍ବି ତର୍ଣ୍ଣକୀତଲ୍ଲୋଳ ଲୋଚନାଂ ଦାଡ୍ମୋଭୀର୍ଣ୍ଣସ୍ୱର୍ଣ୍ଣସାବର୍ଣ୍ଣ୍ୟପୂର୍ଣ୍ଣବର୍ଣ୍ଣା ଶୀର୍ଣ୍ଣକଧୂବନୋତ୍ତ୍ରାହ୍ୱାଢରେଖା ସା ପ୍ରକୀର୍ଣ୍ଣମାଲ୍ୟମୁତ୍ତଥାସ୍ୱ ସନ୍ଧାସନ୍ଧପଂ କଶୋରେଶ୍ୱରଂ ପ୍ରତ :—**

## ଅର୍ଥ :—

**ସଖୀ**—ସଜନି ଲୋ,
ନ ଯେନ ତୁ ସହଚରୀଜନ ହିତ କଥା
ଦେଇ ସ ରିକ୍ତୁ ଲୋ, ଯେବେ ଧସି ପ୍ରିୟ-ପାଶେ ;
ଏବେ ହେଲେ ଉଧୂରିବା ଉପାୟ ତୁ କର ।
ରଖ ତୁ ଆପଣା ମାନ ।
ନହୁଅ ଉଗାଡ଼-ହସା ।
ଶୁଣି ସଖୀ ମୁଖୁଁ
ଏତେ ସାବଧାନି ବାଣୀ,
ଉପଚ ହେମବରନା, ଆୟତ୍ତ ଲୋଚନା
ରତିରଙ୍ଗ-ଅଳସୀ କଶୋରୀ,
ଫିଙ୍ଗି ବେଗେ କୁସୁମର ହାର ଯହିଁ ତହିଁ,

ଘଜେ ଘଜେ, ଡରେ ଡରେ
ତେଜ ନଟବର ଅଙ୍କ,
କହିଲେ ବ୍ରଜସ୍ତ୍ରୀ :—

———

"ଲ"

ଅନୁଚକ୍ର

ଲଳନା ଲଳାମସ୍ଥିରୁ ନୋହି ଗର୍ବ କଣ୍ଠାକଲେ ଯୋଡ଼ି କର—
ଲଳିତା ବଚନ ଶୁଣିଲ ତ ବେଗେ ପୂରେ ଭଲ ବଜେଇର ।
ଲବେ ହେଲେ ଦୟା ନାହିଁକି ? ଆତୁର ଲୋକେ ହେଲେ ଜଣାଜଣି
ଲଜେ ଏ ବରଜେ ପଥ ମୁଁ ଚାଲିବ, କି କର ମୁରଲୀ-ପାଣି ?

— ଗୀତ —

ଲୀଳାନିଧି ହେ, ଲଜେ ମୁଁ ଗଲିଟି ସତି
ଲୁଚିଲଛ କାହିଁ ଶ୍ୟାମ ହେ, ଦିଅ ମୋ-ଲାଗି ଶାଢ଼ୀ । ପଦ ।
ଲଭି ତୁମ୍ଭଙ୍କୁ ପ୍ରାଣବନ୍ଧୁ କରି,
ଲୋକହସାରେ ଯେତେବ ଯିବ ସରି,
ଲସିବ ଯେତେବ ପାଇ ନନ୍ଦାବାଉ,
ଲାଗିଲ ଆପଣଙ୍କୁ କେହି ଆଉ । ୧ ।
ଲକ୍ଷ ଲକ୍ଷ ଗୁଣ ଅଛୁଟି ମୋର,
ଲଲାମ ଆଦି ଭୂଷା ସଜ କର,
ଲଭିଥିବ ଭ୍ରୂ-ମଧ୍ୟ ତିଳକ,
ଲେଖିଦିଅ ବେଗେ ନ ଦେଖୁ ଲୋକ । ୨ ।

ଲୋଷ୍ଣ, ଶ୍ରାଭୁଜବନ୍ଧ ଶିଥିଳାଅ,
ଲତା ଗହଳେ ଗହନେ ପଳାଅ,
ଲଗିଛୁ ଲକ୍ଷା ମୁକୁଟ ଶିଖଣ୍ଡେ,
ଲଜ-କଥା ଲୋକେ ଦେଖିଲେ ଦାଣ୍ଡେ । ୩ ।
ଲଗାଇଛ ହଟ ଯେଉଁ ରସରେ,
ଲୁଟିବ ସିନା କାଲି ପ୍ରଦୋଷରେ,
ଲଙ୍ଘି ଆଶ୍ରିତେ ଥିବା କୃପାସିନ୍ଧୁ,
ଲାଞ୍ଛୁ ଆଜି କେଡ଼େ ହେଲ ହେ ବନ୍ଧୁ । ୪ ।
ଲଳିତା ନୁହେଁଟି ଯେ ଡାକୁଅଛୁ,
ଲକ୍ଷ ଦୁଷ୍ଟରେ ମୁଁ ରଖିଛୁ ବାଛୁ
ଲଘୁ କରଦେବ ଦେଖିଲୁ କ୍ଷଣେ ।
ଲେଖାଧିପ ଅଷ୍ଟଦୁର୍ଗର ଭଣେ । ୫ ।
(ରାଗ—ଲଳିତ । ତାଳ—ଝୁଳ ।)

## — ଗୀତକଥା —

ଶ୍ୟାମ, ପିନ୍ଧାଶାଢ଼ୀ ମୋର କୋଉଠି ଲୁଗୃଇଚ, ଦିଅ । ମୁଁ ଲାଜରେ ମଡ଼ି ଗଲି ହେ ଲୀଳାନିଧି !

୧ । କହିଲ ଭଲା, ତୁମକୁ ପ୍ରାଣପ୍ରିୟ ରୂପେ ପାଇ ମୁଁ ଯେବେ ଲୋକହସାରେ ପଡ଼ିଯିବି, ଲୋକନିନ୍ଦା ଶୁଣିବି, ତେବେ ଆଉ ତୁମେ ମୋଠାରେ କି ସ୍ନେହ ରଖିଲ ?

୨ । ଲକ୍ଷେ ଲକ୍ଷେ ଗୁଣ ଅଛୁ ମୋର, ଦେଖ, ମୋର ମଥାଭୂଷଣ ସବୁ ଏଣେତେଣେ ପଡ଼ୁଛି, ଟିକିଏ ସଜକର ଦିଅ ମୋତେ; ଭୂ଼ଲତା ମଝିର ତିଳକ ଟିକା ଲିଭିଯାଇଛୁ । ଦାଣ୍ଡ-ଲୋକେ ଦେଖିଲେ ହସିବେ ସିନା ! ତା ଆଗରୁ ତୁମେ ତାକୁ ଠିକ କରିଦିଅ ।

୩ । ବଡ଼ ଲୋଭି ହେଲଣି ତୁମେ ଶ୍ୟାମ ! ବାହୁପାଶ ଟିକିଏ ହୁଗୁଳାଇ ଦିଅ । ଗୁଡ଼ ମୋତେ ବନ୍ଧୁ ! ଆଲିଙ୍ଗନରୁ ମୁକ୍ତଦେଇ ତୁମେ ଲତା ଗହଳ ଭିତରେ ଲୁଚିକରି ପଳାଅ । ମୟୂର ମୁକୁଟରେ ଅଳତା ଲାଗିଛି, ଲୋକେ ଦେଖିଲେ ହସିବେ । ଛି ଛି, କି ଲାଜକଥା ଯେ !

୪ । ଦିଅ, ମୋ ଶାଢ଼ୀ ଏବେ ଦେଇପକାଅ । ରସିଆ ! ମୁଁ ବୁଝିଲି ତୁମ ହଠ କୌତୁକ । କାଲି ସଞ୍ଜବେଳେ ତୁମେ ପୁଣି ରସରେ ମାତିବ । ଆଶ୍ରିତ ଲୋକକୁ ଲଘି ଏତେ ହରବର କରୁଛ ! କାଲି ସଞ୍ଜକୁ କଣ୍ଠ ଦେଲି ପରା ? କରୁଣାସିନ୍ଧୁ ବୋଲାଇ ଏଡ଼େ ଲାଞ୍ଚୁଆ ହେଲ ତୁମେ ଶ୍ୟାମ !

୫ । ଜାଣିଛନା, ଲତାଦୁଆରେ ଡାକୁଥିବା ଲୋକଟି 'ଲଳିତା' ନୁହେ ସେ ; ଲକ୍ଷେ ଦୁଷ୍ଟଙ୍କ ଭିତରୁ ସେ ଜଣେ । ମୁଁ ତାକୁ ଭଲକରି ଚିହ୍ନିଛି । ସେ ଦେଖିଲା ମାତ୍ରକେ ମୋତେ ନାନା ଅପମାନ ଦେବ । ଆଠଗଡ଼ ରାଜା ଏହା ଗୀତରେ କହିଲେ ।

## ଶ୍ଲୋକାଂଶ

ଲମ୍ବମମ୍ବରମାରକ୍ତଂ ପ୍ରତି ପ୍ରାଚୀକଟସ୍ଥ କଟୌ,
ବାଲାହୃଦସ୍ୱପଞ୍ଚେପେ ମୁଞ୍ଚ ମନ୍ଥ କଞ୍ଚୁକାଞ୍ଚଳଂ ।

ଅମନ୍ଦାନନ୍ଦପୀୟୂଷନିସ୍ୟନ୍ଦସନ୍ଦୋହବିନ୍ଦୁଦଳସ୍ୟନ୍ଦନପଦଦର୍ଶିତ-ନନ୍ଦୈର୍ନିଶାଚରମଦନ ସ୍ମରକବନେତରଚରଣ ଯୁଧଧ୍ୱନିଭର୍ଯ୍ୟମୁନା-ବାଃପୂରବକସ୍ପୁରବନ୍ଦବୃନ୍ଦବୃନ୍ଦମରନ୍ଦପାନପ୍ରମୁଦିତାଳିପାଳିପ୍ରଣୀତ-ଝଙ୍କାରୈର୍ନନ୍ଦମନ୍ଦରଗୋପୁରବଲମ୍ବବନ୍ଦନକୁରମ୍ବସ୍ତବପାଠପାଟବୈର୍ବା-ହିନ୍ୟବଗାହାଗତଗୋପୀଜନାଭରଣରଣତ୍କାରଣୈଃ ପଞ୍ଚରଭ୍ୟମାଣ-ପ୍ରାସ୍ତଢକଡିଣ୍ଡିମରବାଡ଼ମ୍ବରୈଃ ସବୃତେଽପ୍ୟମ୍ବରତଳେ ଶନୈର୍ନିକୁ-ଞ୍ଜାନ୍ନିଷ୍କ୍ରାନ୍ତାଂ କାନ୍ତାଂ ପ୍ରତି ସଖ୍ୟଃ :—

**ଅର୍ଥ :—**

**ଶ୍ରୀମତୀ**—ତେଜ ମୋ ପରାଣ ଘନଶ୍ୟାମ !
କାମିନୀ-ମନ-ମୋହନ !
ଦେଖ, ଦେଖ,
ପୂର୍ବାଶା ନାୟିକା ଏବେ
ରଙ୍ଗବାସେ ଦେଲଣି ଢୋଡ଼ାଇ କଟିତଟ ।
ଉଦିଲେଣି ତରୁଣ ଅରୁଣ ।
ଶୁଣ, ଶୁଣ ପ୍ରିୟତମ !
ନିଶି ଅବସାନେ, ସୁଖ-ମିଳନ ଆଶାୟୀ
ଚକ୍ରବାକ ଦମ୍ପତିର ଆହ୍ଲାଦ ନିଃସ୍ୱନ,
ତାମ୍ରଚୂଡ଼ କଣ୍ଠେ ଶୁଭେ
ପ୍ରଭାତର ମଧୁ ଆଗମନୀ ।
ଯମୁନାର ନୀଳ ଜଳେ-
ବିକଶିତ ପଦ୍ମ-ମଧୁ ଆଶେ,
ମଧୁକରେ ଆରମ୍ଭିଲେ ଗୁଞ୍ଜନ ଝଙ୍କାର ।
ନନ୍ଦରାଜ ନବର ତୋରଣେ
ସ୍ତବଗାନ କରିଲେଣି ଭଟେ ।
ପ୍ରଭାତୀ ଡିଣ୍ଡିମ ଶୁଭେ ଯାଏ ମିଶି
ଯମୁନାରେ ସ୍ନାନାର୍ଥିନୀ-
ଗୋପବାଳା ପରିହିତ
ଚରଣର ନୂପୁର ନିନାଦ ।
ବିବିଧ ଶବଦେ ଯହିଁ ଭରିଲା ଆକାଶ ;
ତେଣୁ ତହିଁ ବିନୋଦିନୀ ରାଇ,
ତେଜିଲେ ସଧୀରେ କୁଞ୍ଜ
ନିରେଖି ଧନୀରେ,
ପରିହାସେ ପଚାରିଲେ ସଖୀ :—

"ବ"

ଅନୁଚନ୍ତା

ବାସି ଫୁଲ ସର, ମଉଳଛୁ ଶିର, ବାହାର କୁଞ୍ଜରୁ ଗଲ
ବାର ହୋଇଗଲେ, ଘେର ସହଚରୀ, ପଗ୍ଗରଲେ କ ଗୋ ସହ !
ବେଣ ତ ମଳନ, ବାସ ଅଯତନ, ବଣରେ ନଥିଲୁ ପରା
ବଶେଷେ ଲକ୍ଷଣ, ଦଶେ ଆନଆନ, ଏକ ଗ୍ଲାଢ ଚମ୍ପାଝରା ?

— ଗୀତ —

ବଚନ ବେଶ ମଞ୍ଜୁଳା ରେ ବାଳା, ବବଧ ଶୃଙ୍ଗାରଶୀଳା,
ବଭ୍ରବନ୍ତ ଅର୍ଦ୍ଧେ ଏକାକୀ ଏକାକୀ ହୋଇ ରଚୁ ଫୁଲ ଡୋଳା ରେ,
ବଳାସକୁଶଳା ରେ, ବଲ୍ଲୀବନଳପୂବହାରଲୋଲା । ୧ ।
ବାଲକାଙ୍କୁ ବାସ ପର ରେ ବାଳା, ବଞ୍ଚୁଥିଲୁଁ ଅନୁସର,
ବଲକ୍ଷଣ ବନବହାର ଉତ୍ସବ ବେଳେ ଯା ଦେଲୁ ପାଶୋର ରେ,
ବଗୃର ତ ଗୋରା ରେ, ବଶ୍ୱେ କାହ୍ନିକ ପ୍ରୀତି ଆଚର । ୨ ।
ବ୍ୟସ୍ତ ହୋଇ ଚହମାଛୁରେ ବାଳା, ବ୍ରଣଗଣ ତ ଦଶୁଛି,
ବମ୍ବାଧରୁ ନବପଲ୍ଲବମାନଙ୍କୁ ବାଣ୍ଟିଲ୍ କ କଛି କଛି ରେ,
ଶ୍ଲଥ ହୋଇଛି ରେ, ବାସ ପିନ୍ଧିଥାଉ ପର କାଛି । ୩ ।
ବଲ୍ଲୀକ ଅନାଇ ଦୂରରୁ ରେ ବାଳା, ବାସରେ ତ ଭୟ କରୁ,
ବ୍ରଜେ ଆଜ ଶୁଣି ଆସିଲ୍ ତୁ ପୁଣି ପ୍ରତରାତ ଆସୁ ଘରୁରେ ।
ବଜନେ ସଞ୍ଚରୁ ରେ, ବଡ ବଷମ ଏ ଯା ନ ଉରୁ । ୪ ।
ବନୟ ନୟବସତି ରେ ବାଳା, ବମୋହନ କଳାବତୀ,
ବରୂପାକ୍ଷ ଦେବ ବପକ୍ଷକୁ ଜଣି ଯତଣ ମଣ୍ଡିଲ୍ କ କ୍ଷିତରେ,
ବଲ୍ଲବଯୁବତ ରେ, ବନ୍ଦେ ଅଷ୍ଟଦୁର୍ଗଧରାପତି । ୬ ।

(ରାଗ—ଆରଖି । ତାଳ—ଝୁଲା)

## — ଗୀତକଥା —

୧ — ବାଳା ! ବଚନ ବେଶରେତ ଭାରି ସୁନ୍ଦର ଦିଶୁଚୁ ; ପୁଣି ବଡ଼ ଚତୁରୀ ତୁ, ଅଧରାତିରେ ଏକୁଟିଆ ହୋଇ କେମିତି ଆସି ଏ ବଣଠାରେ ଫୁଲ ତୋଳୁଚୁ ମ ? ନବ-ବିଳାସିନୀ ! କୁଞ୍ଜବନରେ ଖେଳାଖେଳାରେ ମାତିବାକୁ ମନ ତୋର ଭାରି ଦମଦମ ହେଉଛି !

୨ – ଗୋରୀ ରେ, ପିଲଟି ଦିନରୁ ପିନ୍ଧାଲୁଗା ଦେହରେ ଲାଗି ରହିବାପରି ଆମେ ପରା ତୋ ଅନୁସରଣରେ ଥାଉଁ; ଏ ସରସ ବନବିହାର ଉତ୍ସବ ବେଳେ ତୁ ଆମକୁ ଏକାବେଳକେ ପାସୋରି ପକାଇଲୁ ? ଏ କଥାଟା ଏକା ଆମକୁ ଭାରି ବାଧୁଚି, ବିଚାର କରି କହିଲୁ ଦେଖି, ଲୋକେ ସଂସାରରେ ବନ୍ଧୁ ବାନ୍ଧନ୍ତି କାହିଁକି ?

୩ — ସହି ! ଗଣ୍ଡରେ ତୋର ଯେଉଁ ମାଛିର ଚିହ୍ନ ସବୁ ହୋଇଥିଲା ସେଗୁଡ଼ିକ ଲିଭି ଲିଭି ଗଲାପରି ଦିଶୁଛି, ଅଧରରେ କ୍ଷତ ହେବାପରି କଅଣ ଚିହ୍ନମାନ ଦେଖାଯାଉଛି ! ପାଚିଲା କଇଁଅକାକୁଡ଼ି-ପରି ତୋ ରଙ୍ଗ ଅଧରର ନୂଆ ପଲ୍ଲବମାନଙ୍କରୁ ମାଛିମାନଙ୍କୁ କାଟି କାଟି ବାଣ୍ଟିଲୁ କି ? ସେମାନେ ପଲ୍ଲବ ଲୋଭରେ ତୋ ଅଧରରେ ବସି କ୍ଷତ ବିକ୍ଷତ କରି ଦେଇଛନ୍ତି ବୋଧହୁଏ ! ତୁ ତ ସବୁବେଳେ କାଛୁକରି ଲୁଗା ପିନ୍ଧିଥାଉ, ଆଜ ଏମିତି ହୁଗୁଳା ହୋଇଯାଇଛି କାହିଁକି ମ ?

୪ — ଆମେ ତ ଜାଣିଥିଲୁଁ ତୁ ଘୁରି ଲତାଠାକୁ ଦେଖିଲେ ଡରୁ, ଆଜ ଶୁଣିଲୁଁ କଅଣ ନା—ତୁ ନିଛି ରାତିରେ ଘରୁ ବାହାରି-ଆସି ନିଘୁଞ୍ଚିଆରେ ବଣବୁଲା ଆରମ୍ଭ କରିଦେଇଚୁ ! ଏ କଥା ତ ବଡ଼ ଚାଟକା ଲାଗୁଛି !

୫ । ଧନ ! ଭୁ ମାତ୍ରବନପୂର୍ଣା,ବନପୂର୍ଣୀଳା ପୁଣି ନାନା ସୃଷ୍ଟ କଳା ବିଦ୍ୟାରେ ବିଚକ୍ଷଣା । ଗୋପାଳ ଘରର ଭୂଆଷଣୀ ହୋଇ କନ୍ଦର୍ପକୁ ଜିଣି, ପୃଥିବୀରେ ଯଶ ପତାକା ଉଡ଼ାଇ ଦେଲୁ କି ?
ଆଠଗଡ଼ର ରାଜା ତୋ ପଦ ବନ୍ଦନା କରୁଛନ୍ତି ।

---

ଶ୍ଳୋକାଂଶ

ଯା ତ୍ୱଂ ଶିରୀଷାଙ୍ଗଲତେ ସହେଥା ନାଲୀଜନାଲିଙ୍ଗନମପ୍ୟଗାଢଂ,
ଅମାଳରତ୍ନାର୍ଗଳଯୁଗ୍ମରୂଢା ସୈବତ୍ୱମାସୀଃ କଥମଦ୍ୟ କଷ୍ଟଂ ।

ସାନ୍ତ୍ୱଃପ୍ରଣୟୁଦ୍ୱାସପରହ୍ୱାସୈର୍ବଗ୍ଭେଦିରତ୍ନୋଦ୍ୟମାଳୀନାମାଲୀନାସ୍ୱା-ମଙ୍ଗେଷୁ ଲଜ୍ଜାସ୍ୱା ମାଲାବିମର୍ଦ୍ଦୂ୍ୟନାଙ୍ଗ୍ୟାମଙ୍ଗୀକୃତ୍ୟାଙ୍ଗରାଗାଦ୍ୱସ୍ୱାରଂ ସାଲସଲ୍ଲସତ୍ତ୍ୱ ସମୀରେଣ ପଥା କଦମ୍ବକଦମ୍ବସମ୍ବାଧେନତାତ୍ତ୍ୱଃ ସହଚରୀତ୍ତ୍ୱି-ରବଗାହ୍ୱାସ୍ୱ ଯମୁନାବାଃପ୍ରବିଷ୍ଟାସ୍ୱାଂ ରାଧାସ୍ୱାମକସ୍ମାଦାଗତଃ ସାନ୍ଦୀପନ-ମୁନିନନ୍ଦନଃ ସାନନ୍ଦଃ ଶ୍ରୀକୃଷ୍ଣଂ ପ୍ରତି ସସ୍ମିତମ୍ ।

**ଅର୍ଥ :—**

ସଖୀ—କୋମଳାଙ୍ଗୀ,
ଶିରୀଷସମାନ ତନୁ ତୋର,
ସହି ତ ନପାରୁ ସତେ
ସଖୀଜନ ସ୍ନେହ ଆଲିଙ୍ଗନ ;
କିକର ରେ ସହି !
ଧରିଦେଲୁ ମାଳମଣି ବାହୁର ବନ୍ଧନେ ;—
ଅର୍ଗଳରୁ ବଳି ଯାହା କଠୋର, କଠିନ ?
ଶୁଣି ଏତେ—
ଲାଜେ ଗଲେ ସତି ସୁକୁମାରୀ,
ଏକେ ତ କୋମଳ ତନୁ ରତିରଙ୍ଗେ କ୍ଳାନ୍ତ ।

ଦୂତକ ପୁଣି—
କଦମ୍ବ କାନନ ଛୁଇଁ ବହୁଥିଲା ସମୀରଣ ମନ୍ଦ ।
ଯମୁନା ପୁଲିନ-ବାହୀ କ୍ଷୀଣ ବନପଥେ—
ସୁବାସିତ ଅଙ୍ଗରାଗ ସୁଲେପିତ ଗୋପୀକା ଗହଣେ,
ପ୍ରବେଶିଲେ ବ୍ରଜେଶ୍ୱରୀ
ଯମୁନାର ଜଳେ ।
ତେଣେ ସାନ୍ଦୀପନ ମୁନିସୁତ
ଆକସ୍ମାତ୍ ପଥେ ଭେଟି ରସିକରାଜଙ୍କୁ
ସମ୍ଭାଷିଲେ ପରିହାସେ—

---

## 'ଚ'

### ଅନୁଚିନ୍ତା

**ଶଙ୍କି ବନପଥେ ଯାଉଁ ଯାଉଁ ଧରା ପଡ଼ିଲେ ପୀରତ-ଚୋର**
**ଶଠ ବାଟ ଜଗି ବଟୁ-ଛଳ-ଲୁହା ପଗୁରଇ ଧରି କର :—**
**ଶୋଜ ତେଜି ଏତେ ବେଗେ ରଜାପୁଅ, ଯାଇଥିଲ କାହିଁ କାହିଁ,**
**ଶାଉଁଳା ଶ ଉଁଳ ପ ଶୋର, ବାଗଡ଼ ଦେବଟି ମୋତେ କହ୍ନାଇଁ ।**

### — ଗୀତ —

ଶ୍ୟାମ ଶିଖଣ୍ଡି-ଚୂଳ,
ଶ୍ରମ କି ଆଜଯାକେ ହେଲା ସଫଳ । ପଦ ।
ଶବରୀ ନନ୍ଦା ବନା ଗଲା କି ସର,
ଶମ୍ବରପରପୁର କଲେ କି ଜୁର ? । ୧ ।

ଶ୍ରୀଅଙ୍ଗ ବେଶ କପାଁ ଏପରି ଆଜ,
ଶରଦଚନ୍ଦ୍ର ଚୁମ୍ବୁନାହିଁ କି ଲାଜ । ୨ ।
ଶିଶୁ ହେଲେହେଁ ତୁମ୍ଭେ କଲଭ ସରି,
ଶଶ କଶୋଦରିକି ଦେଲ ଯେ ସାରି । ୩ ।
ଶିରୀଷ ମାଳା ଦଳଦେଇ କୁଠାରେ,
ଶଙ୍କା ନ କଲ ସଖୀମାନଙ୍କଠାରେ । ୪ ।
ଶରମପ୍ରଦ ଆଜସରକ୍ସ ହେଲ,
ଶମନସ୍ୱସା-ତଟ-ଅଟବୀ ବୁଲି । ୫ ।
ଶିର ସୁନ୍ଦର ଦଶେ ଯାବକ-ବୋଳେ,
ଶରଣ ବୋଲି ପଡ଼ିଲ କି ପାʼତଳେ । ୬ ।
ଶପଥ ଶତ ଶତ କହୁଛି ସତ,
ଶ୍ରୀବାଲୁଙ୍କେଶ ଦେବ ରଚିଲେ ଗୀତ । ୭ ।
( ରାଗ-ମୁକ୍ତାବଳୀ । ତାଳ-ଏକତାଳୀ )

## — ଗୀତକଥା —

ମଧୁମଙ୍ଗଳ :—

ମୟୂର-ଚୂଳିଆ ଶ୍ୟାମ ! ଯେତେ ପରିଶ୍ରମ ଆଜଯାକେ କରିଥିଲ, ସେ ସବୁ କଅଣ ସଫଳ ହେଲା କି ?

୧ । କନ୍ଦର୍ପ-ଭଣ୍ଡାର ଲୁଣ୍ଠି କରୁକରୁ ଅନଙ୍ଗ ରେ ରାତି ପାହିଗଲା କି ଆଜି ?

୨ । ଅଙ୍ଗ-ଶୋଭା ତ କାହିଁକି ମଳିନ ଦିଶୁଛି ! ଶରତ ଚନ୍ଦ୍ର-ପରି ଶ୍ରୀମୁଖକୁ ଚିକିଏ ହେଲେ ଲାଜ ମାଡ଼ୁନାହିଁ ?

୩ । ବାଳକ ହେଲେ କଅଣ ହେବ, ଦେହରେ ତମର ତ ହାତୀଛୁଆର ବଳ । ଶଶୀ ପରି କୋମଳାଙ୍ଗୀ କଶୋଦରିକୁ ସାରି ତ ହେଇଥିବ ତୁମେ !

୪ । ହାଇରେ କାହ୍ନୁ ! ସେ କେଡ଼େ ଦୁଃଖର କଥା ! ଶିଖିଷ-ପୁଷ୍ପର ମାଳାକୁ କୁସ୍ତିରେ ଦଳିଦେଲ ! ସାଙ୍ଗ ସାଥିଙ୍କୁ ତମର ତଳେ ହେଲେ ଭୟ ହେଲ ନାହିଁ ?

୫ । ଯମୁନା କୂଳର ବଣବୁଲାଟା ଏବେ ସରିକି ତମକୁ ସୁଖକର ବୋଧ ହେଲା ପରା ?

୬ । ମଥାରେ ଅଳତାବୋଳ ଲାଗିଛି, ଭାରି ସୁନ୍ଦର ଦିଶୁଛି ତ ! 'ଶରଣ ନେଲି' ବୋଲି କହି, କାହା ପା' ତଳେ ପଡ଼ିଗଲ କି ?

୭ । ଶହେଥର ମୋ ରାଣ ଦେଉଚି ତମକୁ କାହ୍ନୁ, ମୋତେ ସତ ସତ କହ । ରାଜା ବାଲୁକେଶ ଏ ଗୀତରେ ଭଣିଲେ ।

--- ଶ୍ଲୋକାଂଶ ---

**ନବଶୈଶବ ସୌକୁମାର୍ଯ୍ୟ ଧୂର୍ଯ୍ୟାଙ୍ଗ ଲକ୍ଷ୍ମୀଲୋଲ୍ଲକ୍ଷିତଦୂର୍ବଶ୍ୟାମଳସ୍ୟ,**
**ତବ ତସ୍ୟ ବାଳାଢ୍ୟ ଦାଳିକାୟାଃ ସ୍ତନତାଳଦ୍ୱୟସ୍ୟ ଦାରଣଂ ନ ଚଙ୍ଗଂ ।**

**ତରେଣ ଲବ୍ଧାଶ୍ଚବ୍ଧମନୋରଥ ଫଳତସ୍ୟ ଗର୍ବିତୋଽପି ଖର୍ବିତପଙ୍କ-ଶଙ୍କାରମଣୀୟାଦ୍ୟବୋଢବ୍ୟଂ ନନ୍ଦଯଶୋଦୟୋଃ ପୁରତସ୍ତଦାତରତ ମିଥ୍ୟାକ୍ରବତ ମଧୁମଙ୍ଗଳେ ସପ୍ରଣୟମୀଷଦାସ୍ମିତଂ ତଂ ପ୍ରତି କୃଷ୍ଣଃ, ଧୃଷ୍ଟାଣ୍ଟସ୍ୟ ବାର୍ତ୍ତିତା ବାର୍ତ୍ତାମର୍ଥ କିଂ ନାଭିପ୍ରେଷି ଭିନ୍ନାମବଲମ୍ବସେ ଦାରୁଣାଂ ସରଣୀମ୍ ॥**

ମଧୁମଙ୍ଗଳ :—

ଆହେ ବଳବାନ୍, —
ଶୈଶବରେ ଯା'ର

ସୁକୁମାର କରାଙ୍ଗୁଳି
ଟେକିଥିଲ ଅବହେଳେ ଗିରି ଗୋବର୍ଦ୍ଧନ,
ବିଚିତ୍ର ନୁହଇ ତାହା ପକ୍ଷେ
ବାଳିକାର ତାଳସ୍ତନ ବିଦାରଣ ଏବେ ।
ହେ ଶ୍ରୀକୃଷ୍ଣ !
ମୁଖ-ଶିରୀ ନିନ୍ଦେ ପୂର୍ଣ୍ଣଶଶି,
ଗର୍ବିତ ହୋଇଛ ତୁମ୍ଭେ,
ପୂରି ଅଛୁ ବୋଲି ପରା
ବହୁକାଳ-ସଞ୍ଚିତ ବାସନା !
ଚାଲ, ଚାଲ ତେବେ ଶ୍ୟାମଚନ୍ଦ୍ର !
ବୁଝାପଡ଼ା ହେବ କଥା
ତୁମ୍ଭ ପିତା ମାତାଙ୍କ ସମୀପେ ।
ସଖା ମଧୁମଙ୍ଗଳର ବଚନ ଶୁଣନ୍ତେ,
ଧାଡ଼ି ମିଶା ହସ ତୁଲେ
କହିଲେ କହ୍ନାଇ :—
ଧୂର୍ତ୍ତ ଶିରୋମଣି ବନ୍ଧୁବର !
ଏତିକ ଦାରୁଣ ତୁମ୍ଭେ ଜାଣିଥ ନଥିଲି,
ଆରତ ମୁଁ ପରା,
ନ ପଚାରି କୁଶଳ ବାରତା ମୋର
ତୁମ୍ଭେ ପୁଣି ହେଉଛ କଠୋର ?

———

## 'ସ'

### ଅନୁଚନ୍ତା

**ସବୁ ମନ୍ଦ କର ମହତ ଜନର ହାବୁଡ଼େ ପଡ଼ିଲେ ଚର**
**ସତ କ ମିଛ—ଏ ମହାଜନ ପଦ, ପଦକ ମନେ ବସ୍ଥର,**
**ସାରଦଅ ନାହିଁ ସଖା, ଆଉ ଲଜେ, ବୋଇଲେ ମୂରଲୀଧର,**
**ସାଇତ ସଜାଡ଼ି, କଥା କହିବାରେ ନାଗର ତ ଧୂରନ୍ଧର ।**

### — ଗୀତ —

ସପତଟି ମୋର ରେ, ସହ ଏହି ଥର ରେ
ସାର ହାରମସାରମଣିବର ପରି ଧରି ବକ୍ଷସ୍ଥଳେ ନିରନ୍ତର,
ନଫିଙ୍ଗି ପୁଣି ହଟି, ସୁନ୍ଦର ନୁହଇଟି
ବସ୍ତୁର ଭରସା ବଢ଼ାଅ ଅପରିମିତ । ପଦ ।
ଶୁଣିଲେ ଆଉ କେ ବ୍ରଜେ, ସରିଯିବ ସିନା ଲଜେ,
ସାହା ତୁ ନୋହିଲେ କଷ୍ଟୁ, ସଂସାରେ ମୁଁ ନିକ ଅଛୁ । ୧ ।
ସାଧୂଜନ କୁକ୍ଷିକୂପେ, ଭଲ ମନ୍ଦ ସିନା ଛପେ,
ସଂହର କୋଧ ଉଦୟୁ, ସହଜେ ତୁ ସହୃଦୟୁ । ୨ ।
ସବୁ ଅନ୍ୟାୟୁ ଚରିତ, ଶିକ୍ଷ କୁ ଗୁରୁ ତୁହି ତ,
ସମୟେ କାହ୍ନୁ ତୋଟିକ, ସଖା ଲକ୍ଷଣ ଏ ଟିକ ? । ୩ ।
ସମାଂସମୀନା ଅଯୁତେ, ସମର୍ପି ଦେବ ମୁଁ ତୋତେ,
ସମ୍ଭାଳ ମୋର ଆତୁର, ସର୍ବସ୍ୱ ପରି ତୁ ମୋର । ୪ ।
ସାକ୍ଷାତ ଦେଖିଲି ପରି, ସାକ୍ଷୀ ଦେବାକୁ ବାହାରି,
ସାଧିବାର ଅବସ୍ଥର, ସପତ୍ନୀ ମୁଁ ନୁହେଁ ତୋର । ୫ ।

ସାନ୍ଦୀପନ ସୁତ ପତି, ସେ କି ଜାଣେ ବୋଲି ପ୍ରୀତି,
ସରସେ ପିଟିବେ ଡକ୍କା; ସମ୍ପାଦବୁ ଏତେ ଏକା । ୬ ।
ଶୁଣି କିଶୋର ବଚନ, ସଖା କଲେ ଆଲିଙ୍ଗନ,
ସୁଦାମା ଅଷ୍ଟଦୁର୍ଗର, ସନ୍ତୋଷେ ଯୋଡ଼ିଲେ କର । ୭ ।

( ରାଗ—କଲ୍ୟାଣୀ । ତାଳ ଆଠତାଳି । )

## — ଗୀତକଥା —

ଶ୍ରୀକୃଷ୍ଣ—

ସଖା ମଧୁମଙ୍ଗଳ ! ସତ୍ୟ ଯା' ଏଇ ଥରଟା, ତମ୍‌କୁ ମୋ ରାଣ । ଅତି ସବାଗରେ ସରସ ଇନ୍ଦ୍ରନୀଳମଣିକୁ ଗୁନ୍ତରେ ଦାରକର ପକାଇ, ପୁଣି ଗେଲଗେଲରେ ତାକୁ ଫିଙ୍ଗି ଦଅନାହିଁ । ଟିକଏ ଏ କଥାକୁ ବିଚାର କର । ମୋ ଭବିଷ୍ୟତ ଆଶା ବଢ଼ାଇବାରେ ତୁମେ ସାହାଯ୍ୟ ହୁଅ ।

୧—କଥାଟା ଯେବେ ଗୋପପୁରରେ କେହି ଶୁଣିବେ, ତେବେ ମୋ ମହତ୍ତ୍ୱ ସରିଯିବ; ମୁଁ ଲାଜରେ ମରିଯିବି ପିନା ! ତୁମେ ମୋର ସାହା ନୋହିଲେ ମୁଁ ଆଉ ଜୀଇବି ଟିକେ ?

୨—ସାଧୁଲୋକଙ୍କ ପେଟ ଭିତରେ ସବୁକଥା ଲୁଚି ଛପି ରହେ, କଥାଟା ବାହାରକୁ ଫୁଟେ ନାହିଁ । ରାଗ ନାହିଁ ଆଉ, ତୁମେ ପରା ମୋର ପ୍ରକୃତ ବନ୍ଧୁ ।

୩—ଯେତେକ ଅନ୍ୟାୟ ଆଚରଣର ତ ଗୁରୁ ତୁମେ ଆଉ ବେଳସରିକ ତଣ୍ଟି ଚିପି ଦେବାଟା କଅଣ ବଡ଼ ପଣିଆଁ ?

୪—ଦଶହଜାର ଦୁଧିଆଳି ଗାଈ ମୁଁ ଦେବି ତମକୁ । ମୋ ମହତ୍ତ୍ୱ ରଖ । ସମ୍ମାନ ଯାଆ, ତୁମେ ପରା ମୋର ସର୍ବସ୍ୱ ।

୫—ଆଖି ଦେଖା ଭଲ ସାକ୍ଷୀ ଦେବାକୁ ବାହାରି ପଡ଼ୁଚ ଯେ, ମୁଁ କଅଣ ତମ ଭଗାର ? ଏମିତି ଅବଗୃର କାହିଁକି କରୁଛ ?

୬—ହେଲା ଏବେ, ତୁମେ ଏ କଥା ଦାଣ୍ଡରେ ପ୍ରକାଶ କରିବ । ଲୋକେ କଅଣ କହିବେ ଜାଣ ? କହିବେ ।—ସାନ୍ଦୀପନ ଋଷିଙ୍କ ପୁଅ ହୋଇ ସେ ଅବା ପ୍ରୀତି କଥା କଅଣ ଜାଣିବ ? ସେ ତ ତପସ୍ୱୀଟିଏ ।—ଶେଷରେ ଅପବାଦ ତୁମକୁ ଭୋଗିବାକୁ ପଡ଼ିବ ସିନା !

ଶ୍ରୀକୃଷ୍ଣଙ୍କ ଠାରୁ ଏ ସବୁ କଥା ଶୁଣି ମଧୁମଙ୍ଗଳ ତାଙ୍କୁ ସ୍ନେହାଲିଙ୍ଗନ ଦେଲେ ।

ଆଠଗଡ଼ର ରାଜା ସନ୍ତୋଷରେ କର ଯୋଡ଼ିଲେ ।

— ଶ୍ଳୋକାଂଶ —

**ଅନ୍ୟୋଽନ୍ୟାଶ୍ଳେଷଶଶ୍ୱଦ୍‌ବ୍ୟତିକରବିମଲସ୍ୱାନ୍ତସନ୍ତୋଷବନ୍ତା —**
**ବନ୍ୟୋନ୍ୟାକ୍ଷୀଣଲକ୍ଷ୍ମୀକ୍ଷଣଗଳିତସମସ୍ତାନ୍ତରାୟୌ ସଖାୟୌ ।**
**ସଶ୍ରଦ୍ଧାବଦ୍ଧପଦ୍ଧତ୍ୟୁପନତସଖିଭିଃ ସାର୍ଦ୍ଧମାନନ୍ଦବଂଶୀ —**
**ଶୃଙ୍ଗଧ୍ୱାନାଢ୍ୟଘୋରଂ ତଦପଘନଭୁବୋ ଜଗ୍ମତୁସ୍ତିଗ୍ମରଶ୍ମେଃ ।**

**ତତସ୍ତସ୍ୟାସ୍ତୀରେଽପ୍ୟନ୍ୟଯାମୀଲଶତପଯପଯସରୋ ଯନେଯାଦ୍ଭିର୍ବଲ୍ଲବ-ପଲ୍ଲବାଧରଭିସ୍ତିରଦବଲୋକ୍ୟ ସବ୍ରଜବାଲକବ୍ରଜଂ ସମୁଦଣ୍ଡତାଣ୍ଡବପାଣ୍ଡିତ୍ୟ-ଶୋଭିପିଚଣ୍ଡିଲଚରଣାମ୍ଭୋଜଂ କଣ୍ଠଦବଘିଷ୍ଟଶୈଶବଂ କେଶବଂ ମିଥଃ କଥାପ୍ରସ୍ତେନରେ ।**

ଅର୍ଥ :

ଆନନ୍ଦରେ କୋଳାକୋଳି ହେଲେ ବେନି ସଖା ।
ଦୂର ହେଲା କାହିଁ ସବୁ ବାଧା ।
ଯାଉଁ ଯାଉଁ ଦୁହେଁ ମନ ସୁଖେ,
ସଖାଗଣ ଭେଟିଲେ ପଥରେ ।
ମୃଦଙ୍ଗ, ମୁରଲୀ, ଶିଙ୍ଗା, ବଜାଇ ଆନନ୍ଦେ

ଚଳଚଲେ ସରବେଁ ମୀଳ ଯମୁନ ର ଘାଟରେ ।
ଆନ ଘାଟେ ଯମୁନାର—
ପଦ୍ମ-ପଲାଶ-ଲୋଚନା
ପଲ୍ଲବଅରୁଣାଧରା—
ବରଜଅଙ୍ଗନା କୁଳ,
ବରଜ ବାଳକକୁଳେ
ହେରି, ନର୍ତ୍ତକ-ନାୟକ ଶ୍ୟାମେ
ପରସ୍ପର ପ୍ରେମାଳାପେ ହେଲେ କୁହାକୋହ୍ନି :—

---

## 'ଷ'

**ଅନୁଚନ୍ତା**

**ଷଟ୍‌ପଦ ପିନା ଲୋଭ୍ରୁ ବୁଲେ ମଧୁ ଏ ତ ବିପରୀତ ଛଇ**
**ଷୋଳ, ସତରରୁ ଯଉବନ-ପଦ ଆଗ ଆଗ ବଳନାହିଁ ;**
**ଷଡ଼ଜ-ପଞ୍ଚମ ମିଳନ ମନାସି ଲଜହରା ହେଲେ ଗୋଇ**
**ଷଠରେ ମନାଇଁ ଭଲ ସୁତ ସତେ ନନ୍ଦରାଣୀ ଅଛୁ ପାଇ !**

**— ଗୀତ —**

ଷଟ୍‌ପଦମୀଳକେଶୀ ଆଟଗୋ ଗୁହଁ ଗୁହଁ,
ସଙ୍ଗଂସହାରେ ଖେଳୁଛୁ ନବ ବାଉବାହ;
ସମୀପରେ ତାର ରହି,
ସରଜୁଛନ୍ତି ନର୍ତ୍ତନ ଅନେକ ବରହୀ । ୧ ।
ସଜ ହୋଇ ସ୍ମରସରଦାର ଅବା ଆସେ,
ସ୍ୱକୀୟ ଫଉଜ ଘେରିଅଛୁ ଚଉପାଶେ,
ସାରିଦେବ ପରା ଆଜ,

ସୁରେଶ୍ୱର ରତନ କି ହେବାରୁ ଜଙ୍ଗମ,
ସବୁ ମଣିମାନଙ୍କୁ ମିଳଇ ସେହିକ୍ରମ,
ସ୍ୱର୍ଣ୍ଣବର୍ଣ୍ଣା ଏ ଏଣିକ,
ସମ୍ଭାନ୍ତବେ ମୂର୍ତ୍ତିମନ୍ତ ରତନଶ୍ରେଣୀକ । ୩ ।
ସଞ୍ଚରଣଶୀଳ ନ ବର୍ତ୍ତମାନ ଭୂରୁହ;
ସଙ୍ଗେ ଘେନିଆସୁଅଛି ସଖା-ଶାଖିବ୍ୟୂହ,
ଶୁକ ଶାରୀ ପରଭୃତ,
ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ । ୪ ।
ସୁରଧୂନୀ ତୀରେ ଯେବେ କରିଥିବା ତପ,
ସଙ୍ଖାଳି କରି ଏ ତାପିଞ୍ଛର ଅନାତପ,
ସୁଖେ ବଞ୍ଚିବା ବସନ୍ତେ,
ସାମନ୍ତ ସୁଧାଂଶୁ ଜଗଦ୍ଦେବ ବୋଲେ ଗୀତେ । ୫ ।

## — ଗୀତକଥା —

୧—ଭ୍ରମର ପରି ନୀଳ କେଶଧାରିଣୀ ରେ ସଖି, ଚୃହିଁ ଦେଖ, ପୃଥିବୀ ଉପରେ ସତେ ଅବା ନୂଆ ମେଘ ଖେଳୁଛି, ପାଖେ ପାଖେ ତା'ର ମୟୂରମାନେ ନାଚୁଛନ୍ତି !

୨— ସେନାପତି କନ୍ଦର୍ପ ଅବା ସଜବାଜ ହୋଇ ଲଢ଼େଇକି ବାହାରିଛି ! ଚୃତପାଖରେ ତା'ର ଲଢ଼ୁଆ ଫଉଜ ଘେରି ରହିଛନ୍ତି ସତେ ! କମଳଲୋଚନା ବାଳାମଣୀଙ୍କର ଲାଜ ସେ ନିଶ୍ଚେ ଆଜି ଦୂରକୁ ହଟାଇ ଦେବ ।

୩—ସତେ ଅବା ଇନ୍ଦ୍ରନୀଳମଣିର ଚଳନଶକ୍ତି ସୃଷ୍ଟି ହେଲା, ଆଉ ତା ସଙ୍ଗେସଙ୍ଗେ ଆଉ ମଣିମାନେ ଗତିଶୀଳ ହେଲେ । (ଶ୍ରୀକୃଷ୍ଣଙ୍କୁ ଇନ୍ଦ୍ରନୀଳମଣି ଓ ସଖୀମାନଙ୍କୁ ଅନ୍ୟାନ୍ୟ ମଣି ବୋଲି-

କଳ୍ପନା) ଏଥର ସ୍ୱଦନା ବରନା ରମଣୀମାନେ ଏ ମୂର୍ତ୍ତିବନ୍ତ ମଣିମାନଙ୍କୁ ସବୁବେଳେ ଆପଣାରକର ସାଇତ ରଖିବେ ।

୪—ଅଥବା ଚଳନ୍ତା ତମାଳମାଳ ସାଥିରେ ତା'ର ଅନ୍ୟାନ୍ୟ ବନ୍ଧୁଗଛମାନଙ୍କୁ ଘେନ ଆସୁଛି କି ? ଶୁଆ, ଶାରୀ, କୋଇଲି ପ୍ରଭୃତି ପକ୍ଷୀମାନେ ସେ ଗଛର ଶାଖାମାନଙ୍କରେ ବସି ସଙ୍ଗୀତ ଗାଉଛନ୍ତି କି ?

୫—ସଖି, ସ୍ୱର୍ଗଗଙ୍ଗାକୂଳରେ ଯେବେ ଆମେ ସଭିଏଁ ତପସ୍ୟା କରିଥିବା, ତେବେ ଏ ତମାଳ ଗଛର ଗୁଣ୍ଡିକ ସଙ୍ଗୀନ କରି ସୁଖରେ ବସନ୍ତ-କାଳ ବିତାଇବା ।

ସାମନ୍ତ ରାଜାମାନଙ୍କ ଭିତରେ ଚନ୍ଦ୍ରପୁର ଜଗଦ୍ଦେବ ଏ ଗୀତ ରଚନା କଲେ ।

—ଶ୍ଳୋକାଂଶ—

ପୁରତଃ ପଶ୍ଚତୋଽପି ତର୍ଣ୍ଣକା ଦଧତି କ୍ରୀଡ଼ନମାଳ ଯସ୍ୟ ସଃ
ଅତସୀ ସୁମନଶ୍ରବାଃ ଶିଶୁର୍ବଦ କୋଽୟଂ ଜନନେତ୍ରରଞ୍ଜନଃ ।
ଇତି କୌତୂହଳଲୋଲଲୋଚନାନାମାଭୀରସୁନ୍ଦରୀଣାମ୍—
ମନ୍ୟୋଽନ୍ୟ ସମ୍ଭାଷଣସମାପ୍ତାବେବ ନେଦୀୟ ସେକତାଙ୍ଗଣାଲଙ୍ଗିତ-
ଚରଣସରସିଜେ ନନ୍ଦବ୍ରଜେ ବଧ୍ୱସ୍ତ ଚତୁରଷ୍ଟୋଟିକଙ୍କଣମସୃଂ
ମଦନମୋହନ ଇତି ପ୍ରେମମନ୍ଦମାଡ଼ମ୍ବରଃ ସମାବିରାସୀତ୍ ।

**ଅର୍ଥ :—**

କିଏ ସେ ବାଳକ, ଦେଖ ସଖି !
ଆଗେ ପାଛେ ଯାହାଙ୍କର ; -
ଗଉମାନେ ଖେଳୁଛନ୍ତି କଅଁଳା ବାଛୁରୀ ?
ଆଖିଭୁଲି କି ରୂପ ଲୋ ସତେ ତା'ର ।—
କାହାକରେ ଅତସି କୁସୁମେ ?
କମଳନୟନା ଗୋପବାଳା

ଖେଳାଇ ଚଞ୍ଚଳନେତ୍ର
ଆଳାପିଲେ ଅତି ଆନନ୍ଦରେ ।
ନାଚ ନାଚ କହ୍ନାଇ ଭୁଲରେ
ପ୍ରବେଶିଲେ ଏ କାଳରେ ବରଜ ବାଳକେ
ଯମୁନାର ତୀର ବାଲୁଚରେ ।
ସବୁ ଭୁଲ—
ଭୁଲ ଆପଣାରେ,
ଭାଷିଲେ ଗୋପୀଏ—
ସଜନୀ ଲୋ !
ଅଟନ୍ତି ଏ ଯୁବା ନଟଶ୍ରେଷ୍ଠ
ମଦନ-ମୋହନ ।

---

"ହ୍ରୀ"

— ଅନୁରକ୍ତା —

ହସାଇ ମଦନଶିଶୁଙ୍କ ଶୋଭନ ! ମୋହନ ଯମୁନା ତଟେ
ହେର ଲୋ କିଶୋରି ! ଖଞ୍ଜନ-ଗଞ୍ଜନ ଯୁଗଳ ନୟନ ପଟେ,
ହେଳାଇ ଲଳିତା କହେ ଶୁନ ଶୁନ "ଆପଣାର କର ଗହ"
ହର-ପର ପରପଞ୍ଚ ଏଥରକ ଜୁହାରିବ ତୋରେ ସହ !

— ଗୀତ —

ହରି ଆମ୍ଭର ଗୋ ଏତ ପ୍ରାଣଧନ । ପଦ ।
ହରିହସ୍ତୁ ମଣିକି ଜିଣିଛୁ ଅପଘନ ଗୋ,
ନିନ୍ଦୁ ଅଛୁ ଇନ୍ଦୁକୁ ବଦନ ଗୋ । ୧ ।

ହଜାର ସଂଖ୍ୟକ ଏକ ହେଲେହେଁ ମଦନ ଗୋ,
ନୋହିବ ଏ ମୋହନ ସମାନ ଗୋ । ୨ ।
ହଜ ନ ଯିବ ଜମୂତକେଶୀର କ ଜ୍ଞାନ ଗୋ,
ଶୁଣୁ ଶୁଣୁ ମୃଦୁ ବେଣୁଗାନ ଗୋ । ୩ ।
ହଟି, ଥରେ କରିବା କ ରଦାମ୍ବର ପାନ ଗୋ,
ହେବ ଫଳବନ୍ତ ଯଉବନ ଗୋ । ୪ ।
ହାର ମଧ୍ୟରେ ଆମ୍ଭର ତରଳ ରତନ ଗୋ,
ହେବ କ ଏ ଯୁବତୀ-ଜୀବନ ଗୋ । ୫ ।
ହୃଷ୍ଟ ହୋଇ ଅଷ୍ଟଦୁର୍ଗନମୁଚସୂଦନ ଗୋ,
କଲ୍ଲ ଏ ରସରେ ବିରଚନ ଗୋ । ୬ ।

( ରାଗ-ଗୌଡ଼ୀ । ତାଳ-ଝୁଲ୍ଲ । )

## —ଗୀତକଥା

ହୋଇଛି, ଆମର ଜୀବନଧନ ହରି ।

୧—ଇନ୍ଦ୍ର ନୀଳମଣି-ତେଜକୁ ବଳ ଏହାଙ୍କର ଶ୍ରୀଅଙ୍ଗ ଝଟକୁଛି । ଶ୍ରୀମୁଖ-ଶୋଭା ଚନ୍ଦ୍ରକୁ ନିନ୍ଦା କରୁଛି ।

୨—ହଜାରେ କନ୍ଦର୍ପ ହେଲେ ବି ଏ ଶୋଭାର ସମାନ ହେବ ନାହିଁ ।

୩ - ଘନକୁନ୍ତଳା ନାରୀମାନଙ୍କ ଜ୍ଞାନ ହଜିଯିବ ସଖି, ଏହାଙ୍କ ମୁରଲୀର ଲଳିତ ସ୍ୱନ ଶୁଣିଲେ ।

୪—ସହି ମ, ଥରେ ଯେବେ ଗେଲଗେଲରେ ତାଙ୍କର ଅଧର ଚୁମ୍ବନ କରିପାରନ୍ତେ, ଯୌବନ ଆମର ସାର୍ଥକ ହୋଇ-ଯାଆନ୍ତା ।

୫—ଯୁବତୀ ମନମୋହନ ଶ୍ରୀକୃଷ୍ଣ ସତେ ଆମ କଣ୍ଠହାରର ଉଜ୍ଜ୍ୱଳ ପଦକ ପରି ବିରାଜମାନ ହେବେ ?

୬—ଆଠଗଡ଼ର ରଜା ଆନନ୍ଦ ମନରେ ଏହା ରଚନା କଲେ ।

ଏତସ୍ୟେକ୍ଷଣକୋଣେକ୍ଷଣବଳନ୍ନୀଳାରବିନ୍ଦାଶୁଗା—
ସାରୈଃ ସାଗମମାଗସୁନ୍ଦରଦୃଶାଂ କନ୍ଦର୍ପଦର୍ପୋଦୟୈଃ ।
ଦାସ୍ୟଂ କଂ ନ ଵବେଶ ଵଶ୍ୟମିହ ତୈଃ ତନ୍ତ୍ରଂ ମଣିନାଂ ଗଣୈଃ
ସମ୍ବାଧାଂ ମୁରଳୀଂ ଦୁରନ୍ତଖୁରଳୀଂ ବିମ୍ବାଧରସ୍ଥ ମୁଦ୍ଧ ।

ତସ୍ୟ ଚରଣେସ୍ୟଵିଧ୍ୟଂସିନ ବର୍ହାବତଂସବଂଶୀନଦନଦେ ପ୍ରସରତ୍ୟର୍କଜାୟାଃ କାର୍ଣ୍ଣ୍ୟସ୍ୟ ଶୀଳାବଳୀନାଂ କଳତାୟାଃ ଶାଖିନାମପ୍ୟାଣିଖଂ ସପୁଲକତ୍ୱସ୍ୟ ମୃଗାଣମୁତ୍କଣ୍ଠିତାୟାଃ ଫଣିନାଂ ଚଳିତବଲ୍ଲେଚନସ୍ୟାନୁଭବୋ ବଭୂବ ।

**ଅର୍ଥ :—**

ସଖି !
ମାଳଉତ୍ପଳ ନିର୍ମିତ
ଚଳନ୍ତା ଶର ସମାନ,
ମୋହନର ଅପାଙ୍ଗ ବିଳାସ ।
ଜନମାଏ ଅବହେଳେ କନ୍ଦର୍ପ-ଉନ୍ମାଦ
ପଦ୍ମନେତ୍ରୀ ତରୁଣୀ ମାନସେ ସେ ତ !
ଅପାଙ୍ଗ ଦୃଷ୍ଟିରେ ଯା'ର
ବଶ ହେଲେ ବିଶ୍ୱ-ବାସୀ ଯେତେ
କାହିଁକି ଗୋ ଆଉ ?
କାହିଁକି ତା ବିମ୍ବାଧର ତେବେ
ମୁରଳୀ ବାଦନେ ସତେ ।
କରୁଛି ପ୍ରୟାସ ?
ବାଧିଥିବ ପଗ ସତେ ନରମ ଅଧରେ ତା'ର
ରତନ ଖଚିତ ଏଇ ମୁରଳୀର କଠୋର ପରଶ !

ଦେଖ ଲୋ ସଜନି ! ଦେଖ,
ଶିଖୀଚନ୍ଦ୍ର ଆର
ଚରାଚର ଧୈର୍ଯ୍ୟହର ମୁରଲୀ ନିନାଦେ
ଘନ ହେଲା ଯମୁନାରେ ତଳ ତଳ ଜଳ ।
ତରଲେ ପାଷାଣ ବୁକୁ ।
ରୋମାଞ୍ଚିତ ହେଲା ଅଙ୍ଗ—
ପାଦଠାରୁ ଶିଖଯାଏ ତରୁ ।
କାନପାରି ଭୁଲି ହେଲେ
କାନନର ଚପଳ କୁରଙ୍ଗ ।
ଆଖି ମେଲି
ଥମକି ଅନାଇଁ ରହେ
ବଂଶଧର ଅମ୍ବୁ ;
ବସ୍ମିତ ମାନସେ ।

---

'ଘ'

ଅନୁଚକ୍ରା

ଘରୁଛୁ ଯେ ମଧୁ ମୋହନ ବେଣୁରୁ କାନ ତାହା ପିଇଥାଉ
କ୍ଷଣ ପାଇଁ ହେଲେ ଜୀବନ ସନ୍ତାପରେ ଗୁଣଗଣ କଣ୍ଠ ଗାଉ
କ୍ଷମାନିଧି ପଦେ ଜୁହାର, ଗୁହାର ଏତିକି— ହେ ବନମାଳି !
କ୍ଷମ ହେଉ କବଣଗି ଲଭିବାରେ କବରବ କର-ମାଳି ।

— ଗୀତ —

କ୍ଷମାନୁକମ୍ପାଧର ହେ,
କ୍ଷୀରସାଗରସମ୍ଭବାକୁଚକୁମ୍ଭଯୁଗଳ
ପରିରମ୍ଭ ଚତୁର ହେ । ପଦ ।
କ୍ଷିତିଚକ୍ରବାଳ ମହାଶ୍ରିତ ନିବାରଣ ହେ,
ଶ୍ରୁତିଶିର-ଅବତଂସାକୃତ ଶ୍ରୀଚରଣ ହେ,
ମରାଳବହ୍ନହରଣ,-କରାର୍ଚ୍ଚିତ ଚରଣ,
ଧରାଧର ଧରଣ, ଚରାଚର ଶରଣ,
ତରାବର କରଣ,-ବରାବର ଚରଣ;
—ନଖାଂଶୁ ସୁରଗଣ, ଶିଖାଭରଣ ହେ ।୧।

କ୍ଷଣେ ହେଲେ ନାମକୁ ନ ଭଣେ ମୁଁ ତୁମ୍ଭର ହେ,
କ୍ଷମ ହେବାରୁ ମୁ ପାପୀ ଗଣେ ବିଶ୍ୱମ୍ଭର ହେ,
ମନା ନକର ହିତ, ଅନାଦର ରହିତ,
ଅନାଉଣି କରତ, ଚୂନାକରୁ ଦୁରିତ,
ଅନାଦର ମୋ ଚିତ୍ତ, ମନାସୁ ଛୁଟି ଅହିତ,
ଜନାର୍ଦ୍ଦନ ପତିତ-ଜନାବହିତ ।୨।

କ୍ଷମ ତ ମୁଁ ନୁହେ ଅନୁପମ-ଅନୁଭବ ହେ,
ଯମଦଣ୍ଡରୁ ମୋ ରକ୍ଷା କେମନ୍ତ ଟି ହେବ ହେ,
କଳାକରଭବନ-, ବଳାମୁଖ ଭୁବନ,
-ବଳାହିତ ରତନ, ବଳାବରଜ ଜନ,-
କଳାପର ବୃଜନ, ଦଳା ସୁକୃତ ଧନ—,
ବଳାଢ୍ୟମୁନି ମନ-କଳାପି ଘନ ହେ ।୩।

କ୍ଷମାଧିପ ଜଗଦ୍ଦେବ ସମାପନ କରେ ହେ,
ପ୍ରମାର୍ଜ୍ଜି ହେବାରୁ ଭବ ଭ୍ରମାତିଶଯ୍ୟରେ ହେ,
ବ୍ୟଥାନିବଦ୍ଧ ହର, ପ୍ରଥା ଚଳୁ ମିହିର,
ପଥାନ୍ତରକୁ ହର, ରଥାଦ୍ଧରୁ ଅମର—;
ମଥାମଣି ନକର, ରଥାଙ୍ଗଯୁତ କର,
କଥା ବିନୟ ମୋର ବୃଥା ନ କର ହେ ।୩।

( ରାଗ—କେଦାର । ତାଳ—ତ୍ରିପଟା )

**— ଗୀତକଥା —**

ହେ, କ୍ଷମାସାଗର, କରୁଣାନିଧି, ତୁମେ କମଳା କୁଚମର୍ଦ୍ଦନ-କୁଶଳ ଅଟ ।

୧—ଚରାଚର ବିଶ୍ୱର ମହାଖିନ୍ତ ନିବାରକ ତୁମେ । ବେଦ ତମର ପଦ ଯୁଗଳର ବନ୍ଦନା ଦେଇ ଧନ୍ୟ ହୋଇଅଛି । ହେ ପୃଥିବୀର ଭାର ହରଣକାରୀ, ଜଗତର ଆଶ୍ରୟ, ଚନ୍ଦ୍ରକିରଣ ପରି ତୁମର ନଖର ଜ୍ୟୋତି ଦେବତାମାନଙ୍କର ମସ୍ତକର ଭୂଷଣ ଅଟେ ।

୨—ହେ ବିଶ୍ୱମ୍ଭର, ଦଣ୍ଡେହେଲେ ମୁଁ ତମ ନାମ ସ୍ମରଣ କରୁ ନାହିଁ, ମୁଁ ମହାପାପୀ । ତୁମେ ପ୍ରଭୁ, ମୋର ମଙ୍ଗଳ ମନାସରେ ବାଧା ଦିଅନାହିଁ । ତୁମର ସସ୍ନେହ ଗୃହିଣୀ ମୋର ପାପ ନାଶକରୁ । ହେ ପତିତପାବନ, ମୋ ମନ ସବୁବେଳେ ପାପକଳ୍ପନା କରୁଛି ।

୩—ହେ, ମହାବଳୀ ! ପାପୀ ମୁଁ, କ୍ଷମା ପାଇବାର ଅଧିକାର କଦାପି ମୋର ନାହିଁ । ଯମଦଣ୍ଡରୁ କିପରି ରକ୍ଷା ପାଇବି ? ହେ ଚନ୍ଦ୍ର-ବିନିନ୍ଦିତ ବଦନ ! ହେ ଜଗତର ଶ୍ରେଷ୍ଠ ଇନ୍ଦ୍ର-ବିନିନ୍ଦିତ ମୁଖ ! ହେ ଜଗତର ଶ୍ରେଷ୍ଠ ଇନ୍ଦ୍ରନୀଳମଣି, ହେ

ବଳଦେବଙ୍କ ଅନୁଜ ! ହେ ଜନ-ପାପ ବିନାଶକ, ତୁମେ ମହା ସୁକୃତବନ୍ତ ମୁନିମାନଙ୍କ ମନରେ ମୟୂରର ନବଘନ ସ୍ୱରୂପ ଆନନ୍ଦଦାୟକ ଅଛ ।

୪ ଜଗତର ମାୟା ଜଞ୍ଜାଳରେ ମୁଁ ନିତାନ୍ତ ବ୍ୟତିବ୍ୟସ୍ତ ହୋଇପଡ଼ୁଛି, ତୁମେ ମୋର ଏ ଦୁଃଖ ବିମୋଚନ କର । ଏ ଖ୍ୟାତି ପୃଥିବୀରୁ ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ବିଖ୍ୟାତ ହେଉ । ହେ ଦେବତାମାନଙ୍କର ମଉଡ଼ମଣି, ହେ ଚକ୍ରଧର ! ମୋର ଏ ବିନୀତ ନିବେଦନ କେବେହେଲେ ବୃଥା ନ ହେଉ ।

ପୃଥିବୀର ରାଜା ଜଗଦ୍ଦେବ ଏ ଗୀତକୁ ସମାପ୍ତି କଲେ ।

**ଶ୍ଳୋକାଂଶ**

ଦଳିତାଞ୍ଜନପୁଞ୍ଜ ମଞ୍ଜୁଳାଙ୍ଗୋ
ଲଳିତାଦ୍ୟମ୍ବୁଜ ଲୋଚନାର୍ଚ୍ଚିତାଂଘ୍ରିଃ
ଫଳିତାମରଭୂରୁହଃ ଶ୍ରିତାନାମ୍ ।
କଳିତାପଂ ଦଳୟନ୍ତ୍ୱଳଂ କବୀନାମ୍ ।

ଲୀଳାବନୀଭରସୁଖୋଦ୍ଧୃତବୀରବାରେ—
ଡ୍ଡୀନାଣ୍ଡ୍ରକେନ୍ଦ୍ରଚରମାଭରଣଂ ମହୋ ନଃ,
ଚୀନାଞ୍ଚଳାଲ୍ଚଳଦଞ୍ଚଳଚେଳମାଲଂ
ସ୍ୱୀନାଂହ୍ରସାମସୁମତାଂ ଶରଣଂ ଶରଣ୍ୟମ୍
ପୀନାନୁକମ୍ପନରସାମୃତପୂରପୂର୍ଣ୍ଣୌ
ଦୀନାସ୍ୟନିଃସୃତତରସ୍ତବସଙ୍ଗକର୍ଣ୍ଣୌ,
ମୀନାଦ୍ୟନେକବିଧରୂପଧରଃ ପରସ୍ମା
ଜ୍ଞାନାଶକଙ୍କରଭସ୍ମାନ୍ନ ଜଗଦ୍ଧରତୁ ।

ଶ୍ରୀମଦ୍‌ଭ୍ୟାମନ୍ୟୋଽନ୍ୟଲାବଣ୍ୟଲୋଲଲୋଚନାଭ୍ୟାମମ୍ବର-
ଡମ୍ବରବିଡ଼ମ୍ବିତାମ୍ବୁଧରଗୋଚନାଭ୍ୟାଂ କାନ୍ତିସ୍ୱରମସାରସାରସା-ହୃଶ୍ୟ

ପୂର୍ଣ୍ଣବର୍ଣ୍ଣାଭ୍ୟାମାର୍ତ୍ତିସ୍ୱରକର୍ଣ୍ଣନକ୍ତ କର୍ଣ୍ଣାଭ୍ୟାଂ ରକ୍ତାରବିନ୍ଦସୌନ୍ଦର୍ଯ୍ୟୋଦ୍ଧଲ-
ଚରଣାଭ୍ୟାମମାନୁଷାନୁଭବବୈଭବାଭ୍ୟାଂ ଶ୍ରୀରାଧାମାଧବାଭ୍ୟାଂ ନମୋ ନମଃ ।

ଇତି ଶ୍ରୀ କିଶୋର ଚନ୍ଦ୍ରାନନ୍ଦାଖ୍ୟଂ ଚମ୍ପୂକାବ୍ୟଂ ।
ଓଁ ତତ୍ ସତ୍

---

**ଅର୍ଥ :—**

ଦଳିତ ଅଞ୍ଜନ ସର
ସୁନ୍ଦର ଯା’ କମ-କଳେବର,
ଚରଣ ବନ୍ଦନ ରତ
ଲଳିତାଦି ସହଚରୀ ବୃନ୍ଦ,
କଳ୍ପତରୁ ସର ଯେହୁ
ଆଶ୍ରିତ ଜନର,—
ସେହି ଭଗବାନ କୃଷ୍ଣ,
ବିନାଶନ୍ତୁ
କଳିର କଲ୍ମଷ ଯେତେ ।
ଅସୁର ବିନାଶି ଯେହୁ
ହରିଛନ୍ତି ହେଲେ ଭବଭାର,
ପକ୍ଷୀରାଜ ଗରୁଡ଼ର
ପୃଷ୍ଠ ଦେଶ ଆଭରଣ ଯେହୁ,
ବସନ ଅଞ୍ଚଳ ପୁଣି
ଗଳବନମାଳା ଯାହାଙ୍କର
ଦୋଳି ଖେଳେ ମନ୍ଦ ସମୀରଣେ ;
ପାପ ବିରହିତ ଜନ ଏକାନ୍ତ ଆଶ୍ରୟ

ସେ ବସନ୍ତ ମହୋଜ୍ଜ୍ୱଳ ତେଜ
ସତତ କରନ୍ତୁ ରକ୍ଷା, ମଙ୍ଗଳ ବିଧାନ ।
ଅନନ୍ତ କରୁଣା ଭର—
ଅମୃତ ରସରେ ପୂର୍ଣ୍ଣ ଯେହୁ,
ଆରତ ଡାକକୁ ଯେହୁ
ଡେରଥାନ୍ତି କର୍ଣ୍ଣ ନିଶିଦିନ,
ମୀନ ଆଦି ଅବତାର ଧାରୀ
ସେହି ପରମ ପୁରୁଷ ହରି,
ହରନ୍ତୁ ସତତ
ଯମ କିଙ୍କରର ଡର ।
ଅନ୍ୟୋନ୍ୟର ମାଧୁରୀ ନିରେଖି
ନୟନ ଯୁଗଳ ଚଳ ଚଞ୍ଚଳ ଯାହାର,
ଶ୍ରୀଅଙ୍ଗ ବସନ ଯା'ର
ମେଘ ପୁଣି ଗୋରଚନା —
ବର୍ଣ୍ଣ ସରି ଦିଶେ ମନୋହର,
ତନୁ ଶିରୀ—
ସ୍ୱର୍ଣ୍ଣ ଆଉ ଇନ୍ଦ୍ରନୀଳମଣି ସରି ।
ଦୁଃଖୀ ଦୁଃଖ ଶ୍ରବଣରେ
ଉତ୍କର୍ଣ୍ଣ ଯେ ସଦା,
ଶ୍ରୀ ଚରଣ ଶୋଭା ଯଥା ରଙ୍ଗ କୋକନଦ
ସେହି ରାଧାମାଧବ ପୟରେ
ନିବେଦନ କରେଁ ନମସ୍କାର ।

ଶ୍ରୀ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ କାବ୍ୟ ସମାପ୍ତ
—ଓଁ ତତ୍ସତ୍—

# — ପ୍ରଣିପାତ —

ଅଯୋଗ୍ୟ ଅଧମ ମୁହିଁ
କରଯୋଡ଼ି କରେ ନିବେଦନ !—
ରସିକ ଗୁଣ-ଗ୍ରାହକ ସୁଧୀଜନ ବୃନ୍ଦ,
କର ମୋତେ କ୍ଷମା ।

କେଜାଣି କାହିଁକି,
କାହାର ନିର୍ଦ୍ଦେଶେ ଅବା
ଆବାଲ୍ୟରୁ ମତି ମୋର
ନିତି ବିହରଇ,
ରାଧାକୃଷ୍ଣ ଚରିତ ବର୍ଣ୍ଣନେ ।

ସାଧମତ ପଢ଼ିଛି କେତେ ମୁଁ କାବ୍ୟ
ଜୀବନରେ ମୋର,

କିନ୍ତୁ,
'କିଶୋରୀ-ଚମ୍ପୂ' ସମାନ
କେହି ମୋର ଚିତ୍ତେ ନବସଇ ।

କରି ନପାରଇଁ,
ନପାରିଲି, ନପାରିବି ମୁହିଁ
କାରଣ ଏହାର ।
କଳପି ନପାରେଁ ମନେ
କି ଥିଲେ ସେ କବିସୂର୍ଯ୍ୟ—

ଦେବ କି ମାନବ !
ଯୋଗଜନ୍ମା ପୁରୁଷ ସେ :—
ସଂଗୀତ ସାହିତ୍ୟ ସୁପଣ୍ଡିତ
ଏକାଧାରେ ଗାୟକ, ଗ୍ରାହକ, କବି,
ରସଜ୍ଞ, ନୋହିଲେ :—
ମଧୁଝର, ଝରଝର ସ୍ୱର-ଧାର-ସଞ୍ଚା
ଆନେ କି ସମ୍ଭବ କେବେ ?
ସେବା ନପାରନ୍ତି କରି
ଜୀବନେ ମୁଁ ସେ ପଦ ଯୁଗଳ ;
ତଥାପି ସେ ଇଷ୍ଟ ଗୁରୁ ମୋର ।
ତାଙ୍କରି ଅମର ଲେଖା
କରି ବିଶ୍ଳେଷଣ—
ତାଙ୍କର ଉଚ୍ଛିଷ୍ଟ-କଣା ପାଇ,
ସାର୍ଥକ ହେଉ ଜନମ
ଏତିକ ମୋ ବାଞ୍ଛା ।
ଗୁରୁପଦେ
ପୁଣି, ଗୁରୁ ଆରାଧିତ
ରାଧାଗୋବିନ୍ଦ ପୟରେ
ନମି ବାରଂବାର
ଆଶିଷ ମନାସି,
ଚମ୍ପୂର ପ୍ରବେଶ ଲେଖା
ଶେଷକଲି ଆଜ
ଶ୍ରୀ ଗୁଣ୍ଡିଚ୍ଚ ଶୁଭ ଦିବସରେ
କ୍ଷମ ଅପରାଧ ମୋର ଆହେ ଗୁରୁଦେବ !

କ୍ଷମାକର ଶ୍ରୀରାଧା ଗୋବିନ୍ଦ !
ପ୍ରଣାମ ଶ୍ରୀପଦେ ।

ଶ୍ରୀ ଗୁଣ୍ଡିଚା — କାଳୀଚରଣ—

କଟକ-୯ । ୭ । ୫୭



